ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ରାଣୀଙ୍କ ସେବାରେ



ଗ୍ରନ୍ଥ ମନ୍ଦିର

ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ରାଣୀଙ୍କ ସେବାରେ

[ ଫରାସୀ ଔପନ୍ୟାସିକ ଆଲେକ୍‌ଜାଣ୍ଡର୍ ଡୁମାଙ୍କ ଉପନ୍ୟାସ
**'In the service of the Queen'**
ବହିର ଓଡ଼ିଆ ରୂପାନ୍ତର । ]

ଅନୁବାଦକ
ଶ୍ରୀ ଦାଶରଥି ପଟ୍ଟନାୟକ

ଗ୍ରନ୍ଥମନ୍ଦିର

ପ୍ରକାଶକ :
ମନୋଜ କୁମାର ମହାପାତ୍ର
ଗ୍ରନ୍ଥମନ୍ଦିର
ବିନୋଦବିହାରୀ, କଟକ-୨

ମୁଦ୍ରକ :
ତପନ କୁମାର ମହାପାତ୍ର
ଅପ୍ରତିମା ପ୍ରିଣ୍ଟସ୍
ବୃତାହାଟ, କଟକ-୧

ପ୍ରଥମ ମୁଦ୍ରଣ : ୧୯୭୩
ପରିମାର୍ଜିତ ନୂତନ ସଂସ୍କରଣ : ୧୯୯୬

ମୂଲ୍ୟ : ଟ. ୨୦.୦୦/-

# ରାଜା ତ୍ରୟୋଦଶ ଲୁଇ

ରାଜା ଲୁଇଙ୍କ ପ୍ରଧାନ ରକ୍ଷୀ ଏମ୍. ଡି. ଟ୍ରିଭିଲ୍ ଲୋଭର୍ ରାଜପ୍ରାସାଦକୁ ସାନ୍ଧ୍ୟରାଜଦର୍ଶନ ପାଇଁ ଯିବାସମୟରେ ଭାବିଥିଲେ ଯେ, ମହାରାଜ ନିଶ୍ଚୟ ଚିଡ଼ାମନରେ ଥିବେ; କିନ୍ତୁ ଏ କଣ, ରାଜା ତାଙ୍କ ଦରବାରର କେତେକ ବିଶିଷ୍ଟ ବ୍ୟକ୍ତିଙ୍କ ସହ ଯେ ତାସ୍‌ଖେଳରେ ବସିଯାଇଛନ୍ତି! ରାଜା ଲୁଇ ଟିକିଏ କୃପଣ ପ୍ରକୃତିର; ତେଣୁ ଜୁଆଖେଳରେ ସେ ଜିତୁଥିବାରୁ ତାଙ୍କ ମନ ବେଶ୍ ଖୁସି ଥିଲା। ସେ ଟ୍ରିଭିଲ୍‌ଙ୍କୁ ଦେଖିବାମାତ୍ରେ ସମସ୍ତ ଅର୍ଥ ପକେଟରେ ଭରି ତାଙ୍କୁ ପାଖର ଗୋଟିଏ କୋଠରିକୁ ନେଇଗଲେ। କ୍ରୋଧର ଛଳନାକରି ସେ କହିଲେ, ''ଟ୍ରିଭିଲ୍, କାର୍ଡିନାଲ୍ ତୁମ ମସ୍‌କେଟିଅର୍‌ମାନଙ୍କ ବିରୁଦ୍ଧରେ ନୂଆ ନୂଆ ଆପତ୍ତି କରୁଛନ୍ତି। ସେ ଏତେ ବେଶି ବିରକ୍ତ ହୋଇପଡ଼ିଛନ୍ତି ଯେ, ଆଜି ସନ୍ଧ୍ୟାରେ ମୋ ସହିତ ଚେସ୍ ଖେଳିବାପାଇଁ ବି ଆସିନାହାନ୍ତି। ତୁମର ମସ୍‌କେଟିଅର୍‌ମାନେ କେବଳ ଗୋଟିଏ କଥା ଜାଣନ୍ତି ତାହା ହେଲା ଖୋଜି ବୁଲି କାହାକୁ ହତ୍ୟା କରିବେ ବା ଆଘାତ ଦେବେ।''

ଟ୍ରିଭିଲ୍ କହିଲେ– ''ନା ହଜୁର, ଆପଣଙ୍କ ସମ୍ମାନରକ୍ଷା ପାଇଁ କେବଳ ସେମାନଙ୍କ ବନ୍ଧୁକ ଉଠେ। ସେମାନେ ବା କ'ଣ କରିବେ? କାର୍ଡିନାଲ୍‌ଙ୍କ ରକ୍ଷୀମାନେ ସେମାନଙ୍କ ସହ ବରାବର କଳହ କରୁଛନ୍ତି।''

''କାହିଁ, କାର୍ଡିନାଲ୍ ସେ କଥା ତ ମୋତେ କହିନାହାନ୍ତି? ଯାହାହେଉ, ମୋତେ ଦୁଇପକ୍ଷଙ୍କ କଥା ଶୁଣିବାକୁ ହେବ। ମୋତେ କଣ ବୃଥାଟାରେ ନ୍ୟାୟବାନ୍ ଲୁଇ ବୋଲି କୁହାଯାଇଥାଏ!''

''ହଜୁରଙ୍କ କଥାଟା ବେଶ୍ ପରିଷ୍କାର। ଆପଣଙ୍କର ତିନିଜଣ ଅତି ବିଶ୍ୱସ୍ତ ରକ୍ଷୀ– ଆଥସ୍, ପୋର୍ଥସ୍ ଓ ଆରାମିସ୍ ବୁଲି ଯାଇଥିଲେ। ସେ ଗାସ୍‌କନ୍ ଯୁବକ ମଧ୍ୟ ସେମାନଙ୍କ ସହିତ ଥିଲା। ମୁଁ ତାକୁ ସେଦିନ ସକାଳେ ସେମାନଙ୍କ ସହ ପରିଚୟ କରାଇଦେଇଥିଲି। ଡେସ୍‌ଚକ୍‌ସ ଗିର୍ଜା ପଛପଟ ପଡ଼ିଆରେ ଏହି ଦଳଟି ବିଶ୍ରାମ ନେଉଥିଲେ। ଏହି ସମୟରେ କାର୍ଡିନାଲ୍‌ଙ୍କର ବଛା ବଛା ପାଞ୍ଚଜଣ ରକ୍ଷୀ ସେଠାରେ ଉପସ୍ଥିତ ହେଲେ। ଏ କଥା ନିଶ୍ଚିତ ଯେ, ସେମାନେ ନିଶ୍ଚୟ କିଛି ମନ୍ଦ ଉଦ୍ଦେଶ୍ୟ ନେଇ ସେଠାକୁ ଯାଇଥିଲେ।''

ରାଜା କହିଲେ, ''ଏଥିରେ ସନ୍ଦେହ କରିବାର ବା କ'ଣ ଅଛି ?''

''ହଜୁର ଜାଣନ୍ତି, ମସ୍‌କେଟିଅର୍‌ମାନେ ହଜୁରଙ୍କ ବ୍ୟତୀତ ଅନ୍ୟ କାହାରି ସେବା କରନ୍ତି ନାହିଁ; କିନ୍ତୁ କାର୍ଡିନାଲ୍‌ଙ୍କ ରକ୍ଷୀମାନେ ଶ୍ରୀହଜୁରଙ୍କର ବିରୋଧୀ। ଏହା ନିଶ୍ଚିତ ଯେ, ଏହି ଦୁଇ ଦଳଙ୍କ ମଧ୍ୟରେ ପରସ୍ପର ପ୍ରତି ଈର୍ଷା ମନୋଭାବ ରହିବ।''

ରାଜା ଦୁଃଖରେ କହିଲେ, ''ହଁ ଟ୍ରିଭିଲ୍‌! ବଡ଼ ଦୁଃଖର କଥା ଯେ, ଦେଶର ଏହି ଦୁଇ ଦଳ ସୈନ୍ୟଙ୍କୁ ଦେଖିଲେ ମନେହେବ, ଦେଶରେ ଜଣକ ପରିବର୍ତ୍ତେ ଯେପରି ଦୁଇଜଣ ରାଜା ଅଛନ୍ତି। ଆଚ୍ଛା, ତୁମ କଥା କହିଯାଅ।''

''ଏହି ତିନିଜଣ ମସ୍‌କେଟିଅର୍ – ସେମାନଙ୍କ ମଧ୍ୟରୁ ଜଣେ ପୀଡ଼ିତ – ଓ ନବାଗତ ଯୁବକଜଣକ ଏହି ପାଞ୍ଚଜଣ ରକ୍ଷୀଙ୍କ ଆକ୍ରମଣ ବିରୁଦ୍ଧରେ ନିଜକୁ ପ୍ରସ୍ତୁତ କରିନେଲେ। ସେମାନେ ଯେ କେବଳ ଆତ୍ମରକ୍ଷା କଲେ ତାହା ନୁହେଁ, ସେମାନଙ୍କ ମଧ୍ୟରୁ ଜଣକୁ ମାରିଦେଲେ ଓ ଅନ୍ୟ ତିନିଜଣଙ୍କୁ କ୍ଷତବିକ୍ଷତ କରିଦେଲେ।''

ରାଜା ଆନନ୍ଦରେ ନିଜର ଦୁଇହାତ ମକଚି ଚିତ୍କାର କରିଉଠିଲେ, ''ଏହା ତ ଜୟଲାଭ। ଏହି ଯୁବକ ବୀରର ନାମ କ'ଣ ?''

''ତାର ନାମ ଦାର୍‌ତାୟାଁ ହଜୁର! ମୋର ଜଣେ ଅତି ପୁରାତନ ବନ୍ଧୁର ସେ ପୁତ୍ର। ତାର ବ୍ୟବହାର ଏତେ ସୁନ୍ଦର ଯେ, ମୁଁ ହଜୁରଙ୍କ ପାଇଁ ତାକୁ ସୁପାରିସ କରୁଛି।''

''ଆଚ୍ଛା, ମୋତେ ଆଉ କିଛି କହନା! ତୁମେ ଜାଣ, ଯୁଦ୍ଧ-ଗଳ୍ପ ଶୁଣିବାରେ ମୋର କି ଆଗ୍ରହ!''

''ପ୍ରକୃତରେ ହଜୁର, ଦାର୍‌ତାୟାଁ ଜଣେ ଅଳ୍ପବୟସ୍କ ଯୁବକ। ଆମ ରକ୍ଷୀମାନେ ତାହାକୁ ନାଗରିକ ପୋଷାକରେ ଦେଖି, ଶତ୍ରୁମାନେ ଆକ୍ରମଣ କରିବା ପୂର୍ବରୁ ଚାଲିଯିବାକୁ କହିଲେ।''

ରାଜା କହିଲେ, ''ଟ୍ରିଭିଲ୍‌, ଏହାହିଁ ତ ପ୍ରମାଣ ଯେ, କାର୍ଡିନାଲ୍‌ଙ୍କ ସୈନ୍ୟମାନେ ପ୍ରଥମେ ଆକ୍ରମଣ କରିଥିଲେ।'' ଟ୍ରିଭିଲ୍ କହିଲେ, ''ହଜୁର, ତାହା ତ ନିଃସନ୍ଦେହ। ଦାର୍‌ତାୟାଁ ଉତ୍ତର ଦେଇଥିଲା ଯେ, ସେ ଜଣେ ମସ୍‌କେଟିଅର୍ ଓ ଶ୍ରୀହଜୁରଙ୍କର ସେ ସେବକ। ସେଥିପାଇଁ ଏହି ତିନିଜଣ ମସ୍‌କେଟିଅର୍‌ଙ୍କ ସହ ନିଶ୍ଚୟ ରହିବ। ତା'ରି ଆକ୍ରମଣରେହିଁ ଜୁସାକ୍ ଭୟଙ୍କର ଭାବେ କ୍ଷତବିକ୍ଷତ ହେଲା। ଫଳରେ କାର୍ଡିନାଲ୍ ଅତ୍ୟନ୍ତ କ୍ରୁଦ୍ଧ।''

ରାଜା ସନ୍ଦେହରେ ପଚାରିଲେ, ''ଜୁସାକ୍‌କୁ ସେ ଆହତ କରିଥିଲା ! ମୋତେ ଅସମ୍ଭବ ମନେହେଉଛି ! କାରଣ ତୁମର ଏହି ଯୁବକ ବାଳକ ମାତ୍ର; କିନ୍ତୁ ଜୁସାକ୍ ଜଣେ ଅଭିଜ୍ଞ ତରବାରିଚାଳକ; ବୁଝିବାକୁ ଗଲେ ସାରା ରାଜ୍ୟରେ ଜଣେ ଶ୍ରେଷ୍ଠ ତରବାରିଚାଳକ ।''

''ମୁଁ ଶ୍ରୀହଜୁରଙ୍କୁ ଯାହା ଯାହା କହିଲି ତାହାହିଁ ସବୁ ଘଟିଥିଲା ।''

''ଟ୍ରିଭିଲ୍, ଏହି ଯୁବକକୁ ଦେଖିବାକୁ ମୋର ବିଶେଷ ଇଚ୍ଛା । ତାହାପାଇଁ ଆମକୁ କିଛିହେଲେ କରିବାକୁ ହେବ। ଆସନ୍ତାକାଲି ମଧ୍ୟାହ୍ନରେ ତାକୁ ମୋ ସହିତ ଦେଖାକରାଅ ।''

ଟ୍ରିଭିଲ୍ କହିଲେ – ''ହଜୁର, ତାକୁ କଣ ଏକା ଆଣିବି ?''

''ନା, ନା, ମୁଁ ସେ ଚାରିବୀରଙ୍କୁ ଦେଖିବାକୁ ଚାହେଁ। ଏକାସମୟରେ ମୁଁ ସମସ୍ତଙ୍କୁ ଧନ୍ୟବାଦ ଜ୍ଞାପନ କରିବି। ଏଭଳି ରାଜଭକ୍ତ ପୁରସ୍କୃତ ହେବାର କଥା ।'' ରାଜା କ୍ଷଣେ ମାତ୍ର ଚିନ୍ତାକରି କହିଲେ, ''କଡ଼ରେ ଥିବା ଶିଡ଼ି ନିକଟରେ ସାକ୍ଷାତ୍ ହେବ। ଏ ବିଷୟ କାର୍ଡିନାଲ୍ ଜାଣିବା ଦରକାର ନାହିଁ।'' ସାମାନ୍ୟ ହସି ଟ୍ରିଭିଲ୍ ଭକ୍ତିଭାବରେ ପ୍ରଣିପାତ କରି ରାଜାଙ୍କଠାରୁ ବିଦାୟ ନେଲେ ।

## ଦାର୍‌ତାୟାଁ

ତହିଁଆରଦିନ ମଧ୍ୟାହ୍ନରେ ରାଜାଙ୍କ ସହିତ ଚାରି ସାଥୀଙ୍କର ସାକ୍ଷାତ୍ କରିବା ବିଷୟ ସେମାନଙ୍କୁ ଜଣାଇ ଦିଆଯାଇଥିଲା । ଆଥସ୍, ପୋର୍ଥସ୍ ଓ ଆରାମିସ୍ ବହୁବାର ରାଜାଙ୍କ ସହ ସାକ୍ଷାତ୍ କରିଥିଲେ; କିନ୍ତୁ ଦାର୍‌ତାୟାଁର ଏହା ପ୍ରଥମ ସାକ୍ଷାତ୍। ତାର ଭବିଷ୍ୟତ ହୁଏତ ଏହି ସାକ୍ଷାତ୍‌କାର ଉପରେ ନିର୍ଭର କରୁଥିଲା । ତେଣୁ ସାରାରାତିଟି ଯେ ସ୍ୱନେଲି ସ୍ୱପ୍ନରେ କଟାଇଦେଇଥିଲା ।

ତହିଁଆରଦିନ ପ୍ରଭାତରୁ ଦାର୍‌ତାୟାଁ ପ୍ରସ୍ତୁତ ହୋଇ ଆଠଟାବେଳକୁ ଆଥସ୍‌ଙ୍କ ଘରକୁ ବାହାରିପଡ଼ିଲା। ସେ ପହଞ୍ଚି ଦେଖିଲା ଯେ, ଆଥସ୍ ଓ ପୋର୍ଥସ୍ ଆରାମିସ୍‌ଙ୍କ ବସାକୁ ବାହାରୁଛନ୍ତି। ସେଠାରୁ ତିନିହେଁ ମିଶି ଟେନିସ୍ ଖେଳିବାକୁ ଯିବେ। ଆଥସ୍ ଅନ୍ୟାନ୍ୟ ଶାରୀରିକ କ୍ରୀଡ଼ା ଭଳି ଟେନିସ୍ ଖେଳରେ ବେଶ୍ ପାରଙ୍ଗମ; ମାତ୍ର ଦାର୍‌ତାୟାଁକୁ ଟେନିସ୍ ଖେଳ ବିଷୟରେ ବିଶେଷ କିଛି ଜଣା ନଥିଲେ ମଧ୍ୟ ପୋର୍ଥସ୍ ଓ ଆରାମିସ୍ ଯୋଡ଼ି ସହିତ ଖେଳିବା

ପାଇଁ ଆଥସ୍ ସହିତ ସେ ଯୋଡ଼ିହେଲା। ଆଥସ୍ କିନ୍ତୁ ଅଳ୍ପ ସମୟପରେ ତାଙ୍କର କ୍ଷତରୁ ରକ୍ତସ୍ରାବଯୋଗେ ବସିଗଲେ। ତେଣୁ ଦାର୍ତାୟାଁ ଏକାକୀ ସେ ଦୁହିଁଙ୍କ ବଲ୍‌ର ସମ୍ମୁଖୀନ ହେଲା। ଗୋଟାଏ ଥର ପୋର୍ଥସ୍‌ଙ୍କର ଏକ ବଲ୍ ଦାର୍ତାୟାଁର ମୁଣ୍ଡ ପାଖଦେଇ ଖୁବ୍ ଜୋର୍‌ରେ ଚାଲିଗଲା। ଯଦି ଦୈବାତ୍ ଏହି ବଲ୍‌ଟି ତାର ମୁଣ୍ଡରେ ବାଜିଥାନ୍ତା, ସେ ଆହତ ହୋଇଥାନ୍ତା ଓ ରାଜଦର୍ଶନ ସୁଯୋଗ ହରାଇଥାନ୍ତା; କିନ୍ତୁ ଏହି ସାକ୍ଷାତ୍ ତା ପକ୍ଷରେ ଅତ୍ୟନ୍ତ ଜରୁରି। ତେଣୁ ସେ ଆଉ ଖେଳିପାରିବ ନାହିଁ କହି, ଅନ୍ୟମାନଙ୍କ ଖେଳ ଦେଖିବାପାଇଁ ଦର୍ଶକ ଗ୍ୟାଲେରିରେ ଯାଇ ବସିଲା।

ଦେଖଣାହାରିଙ୍କ ମଧ୍ୟରେ କାର୍ଡିନାଲ୍‌ଙ୍କର କେତେକ ରକ୍ଷୀ ବସିଥିଲେ। ସେମାନଙ୍କ ମଧ୍ୟରୁ ଜଣେ ଏମ୍. ବେର୍ଣ୍ଣାଦୋକ୍‌ସ। ପୂର୍ବଦିନ ମସ୍‌କେଟିଅର୍-ମାନଙ୍କଦ୍ୱାରା ତାର ବନ୍ଧୁମାନଙ୍କର ପରାଜୟ କଥା ସେ ବିଶେଷକରି ଚିନ୍ତା କରୁଥିଲା। ସେ ପ୍ରତିଜ୍ଞା କରିଥିଲା ଯେ, ପ୍ରଥମ ସୁବିଧାରେହିଁ ଏହି ଅପମାନର ପ୍ରତିଶୋଧ ନେବ। ସେ ତାର ସାଥୀମାନଙ୍କୁ ବଡ଼ପାଟିରେ କହିଲା, "ଏହି ଯୁବକଜଣକ ଭବିଷ୍ୟତର ଜଣେ ମସ୍‌କେଟିଅର୍। ତେଣୁ ସାମାନ୍ୟ ଟେନିସ୍ ଖେଳରେ ଭୀତ ହେବା ତା ପକ୍ଷରେ କିଛି ଆଶ୍ଚର୍ଯ୍ୟର କଥା ନୁହେଁ।"

ଏଭଳି ଉଦ୍ଧତ ଭାବରେ କହିଥିବା ଉକ୍ତ ରକ୍ଷୀକୁ ଦାର୍ତାୟାଁ କ୍ରୁଦ୍ଧଭାବରେ ଚାହିଁଲା। ବେର୍ଣ୍ଣାଦୋକ୍‌ସ ଦାର୍ତାୟାଁକୁ ଲକ୍ଷ୍ୟକରି କହିଲା, "ତୁମେ ଯେତେ ସମୟ ପାର ସେତେ ସମୟ ଚାହିଁଥାଅ; ମାତ୍ର ମୁଁ ଯାହା କହିବାର କହିଛି।" ଦାର୍ତାୟାଁ ଧୀର ଗଳାରେ କହିଲା, "ଏହାର ତ କୌଣସି କୈଫିୟତ ନାହିଁ। ମୋର ଅନୁରୋଧ, ମୋ ପଛେ ପଛେ ଆସ।"

"ମୁଁ ଭାବୁଛି, ମୁଁ କିଏ ତୁମେ ଜାଣିଛ।"

ଦାର୍ତାୟାଁ ଉତ୍ତର ଦେଲା, "ମୁଁ ଜାଣେ ଓ ସେଥିପାଇଁ ବ୍ୟସ୍ତ ମଧ୍ୟ ନୁହେଁ।"

"ସେଇଠି ତ ତୁମେ ଭୁଲ କରୁଛ। ତୁମେ ଯଦି ମୋର ନାମ ଜାଣିଥାନ୍ତ, ଏତେ ତରତର ହୁଅନ୍ତ ନାହିଁ।"

"ଆଚ୍ଛା ଆପଣଙ୍କ ନାମ କ'ଣ ?"

"ବେର୍ଣ୍ଣାଦୋକ୍‌ସ।"

ଦାର୍ତାୟାଁ ଶାନ୍ତଭାବରେ କହିଲା, "ଆଚ୍ଛା ମିଷ୍ଟର ବେର୍ଣ୍ଣାଦୋକ୍‌ସ, ମୁଁ ଆପଣଙ୍କ ପାଇଁ ଦ୍ୱାର ପାଖରେ ଅପେକ୍ଷାକରିଥିବି।"

ତାର ନାମ ଯୁବକଟି ଉପରେ କୌଣସି ପ୍ରଭାବ ନ ପକାଇବାରୁ

ରକ୍ଷୀଜଣକ ବହୁତ ଆଶ୍ଚର୍ଯ୍ୟ ହୋଇପଡ଼ିଲା । ବେର୍ଣ୍ଣାଦୋକ୍‌ସକୁ କାର୍ଡିନାଲ୍‌ଙ୍କ ରକ୍ଷୀଦଳ ମଧ୍ୟରେ ଜଣେ ଦୁର୍ଦ୍ଧର୍ଷ ତରବାରିଚାଳକରୂପେ ସମସ୍ତେ ଜାଣିଥିଲେ; ମାତ୍ର ଜାଣି ନଥିଲା କେବଳ ଦାର୍‌ତାୟାଁ । ସେଦିନ ମଧ୍ୟାହ୍ନରେ ତାକୁ ରାଜାଙ୍କ ସହ ସାକ୍ଷାତ୍ କରିବାକୁ ହେବ; ତେଣୁ ଦାର୍‌ତାୟାଁକୁ ଆଉ ସମୟ ନଥିଲା । ସେ ସଙ୍ଗେ ସଙ୍ଗେ ବାହାରକୁ ଚାଲିଆସିଲା ଓ ତା'ପରେ ବେର୍ଣ୍ଣାଦୋକ୍‌ସ ମଧ୍ୟ ବାହାରକୁ ଆସିଲା । ବେର୍ଣ୍ଣାଦୋକ୍‌ସ ସଙ୍ଗେ ସଙ୍ଗେ ତରବାରି ଉନ୍ମୁକ୍ତ କରି ଆକ୍ରମଣ କଲା । ସେ ଭାବିଥିଲା, ଏହି ଅନଭିଜ୍ଞ ଯୁବକ ଡରିଯିବ; କିନ୍ତୁ ଦାର୍‌ତାୟାଁ ତାର ବିଦ୍ୟା ଶିକ୍ଷା କରି ସାରିଥିଲା । ଦୁଇଟିଯାକ ତରବାରି ମୁଠାପର୍ଯ୍ୟନ୍ତ ଛନ୍ଦି ହୋଇପଡ଼ିଲା ଏବଂ ଦାର୍‌ତାୟାଁ ନିଜ ସ୍ଥାନରେ ଅଟଳ ହୋଇ ରହିଥିବାବେଳେ ବେର୍ଣ୍ଣାଦୋକ୍‌ସ ପଛକୁ ଘୁଞ୍ଚିଗଲା । ଦାର୍‌ତାୟାଁ ଏହି ସୁଯୋଗରେ ବେର୍ଣ୍ଣାଦୋକ୍‌ସର କାନ୍ଧ ଉପରେ ଆଘାତ ଦେଲା । ଆଘାତସତ୍ତ୍ୱେ ବେର୍ଣ୍ଣାଦୋକ୍‌ସ 'ଏହା କିଛି ନୁହେଁ' କହି ଆକ୍ରମଣ ପାଇଁ ଆଗକୁ ମାଡ଼ିଗଲା; ମାତ୍ର ଅତିରିକ୍ତ କ୍ରୋଧଯୋଗୁଁ ସେ ଲକ୍ଷ୍ୟ ହରାଇ ଦାର୍‌ତାୟାଁର ତରବାରି ନିକଟକୁ ସିଧା ମାଡ଼ିଗଲା ଓ ତାର ଛାତିରେ ତରବାରି ବିଦ୍ଧ ହେଲା; ମାତ୍ର ସେ ତଳେ ପଡ଼ିଲା ନାହିଁ– ସଙ୍ଗେ ସଙ୍ଗେ ବୁଲିପଡ଼ି ରାସ୍ତା ଆରପଟେ ଥିବା ତାର ଜଣେ ବନ୍ଧୁ ଏମ୍. ଡି. ଲା. ଟ୍ରିମୋଲିଙ୍କ ବାସଗୃହକୁ ଦୌଡ଼ି ଚାଲିଗଲା । ମୁହୂର୍ତ୍ତକ ପାଇଁ ଦାର୍‌ତାୟାଁ ଆଶ୍ଚର୍ଯ୍ୟ ହୋଇପଡ଼ିଥିଲା । ବେର୍ଣ୍ଣାଦୋକ୍‌ସ ଦୌଡ଼ିପଳାଉଛି ଦେଖି ସେ ତାର ଅନୁଗମନ କଲା । ତାର ଶେଷ ଚୋଟରେ ହୁଏତ ସେ ଏହି ଯୁଦ୍ଧର ପରିସମାପ୍ତି ଘଟାଇଥାନ୍ତା; ମାତ୍ର ସେ ଦେଖିଲା ଆଉ ଦୁଇ ଜଣ ରକ୍ଷୀ ତାକୁ ଆକ୍ରମଣ କରିବାକୁ ଆସୁଛନ୍ତି ।

ତରବାରିର ଝନ୍‌ଝନ୍ ଶବ୍ଦ ଟେନିସ୍ ଖେଳ ଦର୍ଶକ ତଥା ବେର୍ଣ୍ଣାଦୋକ୍‌ସର ବନ୍ଧୁଗଣଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ସେମାନେ ସମସ୍ତେ ତରବାରି ଧରି ସେଠାକୁ ମାଡ଼ିଆସିଲେ । ଆଥସ୍, ପୋର୍ଥସ୍ ଓ ଆରାମିସ୍ ମଧ୍ୟ ସେମାନଙ୍କ ବନ୍ଧୁ ଦାର୍‌ତାୟାଁର ବିପଦ ଆଶଙ୍କା କରି ସେମାନଙ୍କ ଅନୁଧାବନ କଲେ । ସେ ଦୁଇଜଣ ରକ୍ଷୀ ଦାର୍‌ତାୟାଁକୁ ଆକ୍ରମଣ କରିବା ପୂର୍ବରୁ ସେମାନେ ତା ପାଖରେ ପହଞ୍ଚିଗଲେ । ରକ୍ଷୀ ଦୁଇଜଣ ସେମାନଙ୍କ ବିରୁଦ୍ଧରେ ଚାରିଜଣଙ୍କୁ ଦେଖି ଚିତ୍କାରକରି ଉଠିଲେ, "ରକ୍ଷାକର ।" ଏହି ଚିତ୍କାର ଶୁଣି ଟ୍ରିମୋଲିଙ୍କର ବହୁ ଅନୁଚର ଓ ସାଧାରଣ ନାଗରିକ ସେଠାରେ ଉପସ୍ଥିତ ହେଲେ । ବର୍ତ୍ତମାନ ଚାରିଜଣଯାକ ସାଥୀ ଚିତ୍କାର କରିଉଠିଲେ, "ମସ୍‌କେଟିଅର୍‌ଗଣ ! ଦୌଡ଼ିଆସ, ଦୌଡ଼ିଆସ ।" ଯଥାଶୀଘ୍ର ଦୁଇଦଳର

ସଂଖ୍ୟା ବୃଦ୍ଧି ପାଇବାକୁ ଲାଗିଲା ଓ ଖଣ୍ଡଯୁଦ୍ଧ ଲାଗିଗଲା । ମସ୍‌କେଟିଅର୍‌ମାନଙ୍କ ଆକ୍ରମଣରେ କାର୍ଡିନାଲ୍‌ଙ୍କ ରକ୍ଷୀମାନଙ୍କ ମଧ୍ୟରୁ ଦୁଇଜଣ କ୍ଷତବିକ୍ଷତ ହୋଇପଡ଼ିଲେ । ସେମାନେ ପରାଜିତ ହୋଇ ବେର୍ଣ୍ଣାଦୋକ୍‌ସଙ୍କୁ ନେଇ ଟ୍ରିମୋଲିଙ୍କ ଅଗଣାକୁ ଚାଲିଗଲେ ଓ ଲୌହ ଫାଟକ ବନ୍ଦ କରିଦେଲେ ।

ଟ୍ରିମୋଲିଙ୍କ ଅନୁଚରବର୍ଗ ରାଜାଙ୍କ ମସ୍‌କେଟିଅର୍‌ମାନଙ୍କ ବିରୁଦ୍ଧରେ ଖଡ୍‌ଗ ଉତ୍ତୋଳନ କରୁଥିବାରୁ ଲୌହ ଫାଟକ ଭାଙ୍ଗି ତାଙ୍କ ଘରେ ନିଆଁଲଗାଇଦେବା ପାଇଁ ସେମାନେ ଚିତ୍କାର କରିବାକୁ ଲାଗିଲେ । ଘଣ୍ଟାରେ ୧୧ଟା ବାଜିଲା ଏବଂ ଦାର୍‌ତାୟାଁ ଓ ତାର ତିନିଜଣ ସାଥୀଙ୍କୁ ଯେ ରାଜଦର୍ଶନ କରିବାକୁ ହେବ, ସେ ମନେପକାଇଦେଲା । ବନ୍ଧୁ କଷ୍ଟରେ ଦାର୍‌ତାୟାଁ ତାର ଉତ୍ୟକ୍ତ ବନ୍ଧୁମାନଙ୍କୁ ଶାନ୍ତ କରାଇ ମସ୍‌କେଟିଅର୍‌ମାନଙ୍କ ପ୍ରଧାନ କାର୍ଯ୍ୟାଳୟକୁ ନେଇ ଚାଲିଗଲା ।

## ସାକ୍ଷାତ୍

ଏହିସବୁ ଗୋଳମାଳ କଥା ଏମ୍. ଡି. ଟ୍ରିଭିଲ୍ ଆଗରୁ ଶୁଣିସାରିଥିଲେ । ଏହି ଚାରି ସାଥୀଙ୍କୁ ସେ ପ୍ରଧାନ ଫାଟକ ନିକଟରେ ଅପେକ୍ଷା କରିଥିଲେ । ସେମାନଙ୍କଠାରୁ ଅନ୍ୟ କୌଣସି ବିଷୟ ଶୁଣିବାକୁ ଅପେକ୍ଷା ନକରି ସେ ସଙ୍ଗେ ସଙ୍ଗେ କହିଲେ, ''ଶୀଘ୍ର ଲୋଭର୍‌କୁ ଚାଲ । ତୁମମାନଙ୍କ ବିରୁଦ୍ଧରେ ରାଜାଙ୍କ ଆଗରେ କାର୍ଡିନାଲ୍ ଅତିରଞ୍ଜିତ କରି କହିବା ପୂର୍ବରୁ ଆମେ ନିଶ୍ଚୟ ରାଜାଙ୍କୁ ସାକ୍ଷାତ୍ କରିବା । ମୁଁ ସବୁ ବିଷୟ ରାଜାଙ୍କୁ ବୁଝାଇଦେବି ।'' ଟ୍ରିଭିଲ୍ ଏହି ଚାରିଜଣଙ୍କୁ ସାଥିରେ ନେଇ ଲୋଭର୍ ପ୍ରାସାଦରେ ପ୍ରବେଶ କଲେ; କିନ୍ତୁ ରାଜା ସେଣ୍ଟ ଜର୍ମେନ୍‌କୁ ହରିଣ ଶିକାରକୁ ଯାଇଛନ୍ତି ଶୁଣି ସେ ବ୍ୟସ୍ତ ହେଲେ– କାରଣ କାର୍ଡିନାଲ୍ ସେହି ଦିନ ରାଜାଙ୍କ ସହ ସାକ୍ଷାତ୍ ପାଇଁ ନିଶ୍ଚୟ ସେଣ୍ଟ୍ ଜର୍ମେନ୍‌କୁ ଯିବେ ଓ ମସ୍‌କେଟିଅର୍‌ମାନଙ୍କ ନାମରେ ମିଛଖଟ ଲଗାଇ କହିବେ ।

ସେଦିନ ସନ୍ଧ୍ୟା ୬ଟା ବେଳେ ଏମ୍. ଡି. ଟ୍ରିଭିଲ୍ ଲୋଭର୍ ପ୍ରାସାଦରେ ରାଜାଙ୍କୁ ସାକ୍ଷାତ୍ କଲେ । ସେଦିନ ଶିକାର ସନ୍ତୋଷଜନକ ହୋଇନଥିବାରୁ ରାଜାଙ୍କ ମନ ଭଲନଥିଲା । ରାଜା ବିରକ୍ତ ହୋଇ କହିଲେ, ''ଏ କେମିତି କଥା, କାର୍ଡିନାଲ୍ ଆପଣଙ୍କ ମସ୍‌କେଟିଅର୍‌ମାନଙ୍କ ବିରୁଦ୍ଧରେ ବହୁତ ଆପତ୍ତି

କରୁଛନ୍ତି । ଆପଣଙ୍କର କଣ ସେମାନଙ୍କ ଉପରେ କୌଣସି କର୍ତ୍ତୃତ୍ୱ ନାହିଁ ? ଶୁଣୁଛି, ସେମାନେ ଲୋକଙ୍କୁ ହତ୍ୟା କରୁଛନ୍ତି, ଘରମାନଙ୍କରେ ପଶି ଗୋଳମାଳ କରୁଛନ୍ତି । ଯାହାହେଉ, ମୁଁ ଆପଣଙ୍କୁ ଅଯଥା ଦୋଷ ଦେବିନାହିଁ । ମୋର ମନେହୁଏ, ଆପଣ ସେହି ତିନି ମସ୍କେଟିଅର୍ ଆଥସ୍, ପୋର୍ଥସ୍ ଓ ଆରାମିସ୍ ଆଉ ସେହି ଗାସ୍କନ୍ ଯୁବକକୁ ଜେଲଖାନାରେ ଭର୍ତ୍ତି କରିସାରିଛନ୍ତି ।''

ଟ୍ରିଭିଲ୍ ଶାନ୍ତଭାବରେ ଉତ୍ତର କଲେ, ''ହଜୁର, ମୁଁ ଆସିଛି ଆପଣଙ୍କଠାରୁ ନ୍ୟାୟ ବିଚାର ପାଇବା ପାଇଁ ।'' ରାଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ, ''ତୁମେ କ'ଣ କହୁଛ ଯେ, କାର୍ଡିନାଲ୍ ମୋତେ ପୁନର୍ବାର ଠକୁଛନ୍ତି ! ବେର୍ଣ୍ଣାଦୋକ୍ସ ଯେ ଆଘାତ ପାଇ ମରିବାଉପରେ, ତାହା କଣ ତୁମେ ସ୍ୱୀକାର କରିବ ନାହିଁ ?'' ଟ୍ରିଭିଲ୍ ଦୃଢ଼ସ୍ୱରରେ କହିଲେ, ''କାର୍ଡିନାଲ୍ ନିଜେ ଓ ତାଙ୍କ ରକ୍ଷୀମାନେ ଆପଣଙ୍କ ମସ୍କେଟିଅର୍‌ମାନଙ୍କ ପ୍ରତି ହିଂସ୍ର; ତେଣୁ ସେମାନଙ୍କୁ ସର୍ବଦା ଅଭିଯୁକ୍ତ କରିଥାନ୍ତି ।'' ଏହା ପରେ ଏମ୍. ଡି. ଟ୍ରିଭିଲ୍ ଯାହା ଯାହା ଘଟିଥିଲା, ସେ ସମସ୍ତ ବର୍ଣ୍ଣନା କରିଗଲେ ।

ରାଜା ନିଜ ଆନନ୍ଦ ଲୁଚାଇରଖିବାକୁ ଚେଷ୍ଟାକରି କହିଲେ, ''ଆଚ୍ଛା ଆଚ୍ଛା, ଆମେ ଦେଖିବା । ବିନା କାରଣରେ ମୋତେ ଲୋକମାନେ 'ନ୍ୟାୟବାନ୍ ଲୁଇ କହି ନଥାନ୍ତି ।'' ପରେ ପରେ ସେ କହିଲେ, ''ସେହି ତିନି ମସ୍କେଟିଅର୍ ଓ ସେ ଗାସ୍କନ୍ ଯୁବକ କୁଆଡ଼େ ଗଲେ ? ମୁଁ ସେମାନଙ୍କ ସହ ସାକ୍ଷାତ୍ କରିବାପାଇଁ ତୁମକୁ କାଲି କହିଥିଲିନା !''

''ସେମାନେ ତଳେ ଅପେକ୍ଷା କରିଛନ୍ତି ହଜୁର ! ଅନୁମତି ଦେଲେ ମୁଁ ସେମାନଙ୍କୁ ଏଠାକୁ ଡାକିଆଣିବି ।''

ଆଥସ୍, ପୋର୍ଥସ୍, ଆରାମିସ୍ ଆଗେଇ ଆସି ରାଜାଙ୍କୁ ଅଭିବାଦନ ଜ୍ଞାପନ କଲେ । ଦାର୍‌ତାଗ୍ନାଁ ପରେ ଆସି ରାଜାଙ୍କୁ ପ୍ରଣିପାତ କଲା । ରାଜା କହିଲେ, ''କାର୍ଡିନାଲ୍‌ଙ୍କର ସାତଜଣ ରକ୍ଷୀଙ୍କୁ ତୁମେ ଚାରିଜଣ ହତ୍ୟା ବା ଭୀଷଣ ଭାବରେ ଆହତ କରିପାରିଛ; ମାତ୍ର ଦୁଇଦିନ ମଧ୍ୟରେ ତୁମେ ଯଦି ଏପରି କରିବ, ତା'ହେଲେ ପ୍ରତି ସପ୍ତାହରେ ତାଙ୍କୁ ନୂତନ ରକ୍ଷୀ ନିଯୁକ୍ତ କରିବାକୁ ହେବ । ଆଚ୍ଛା ଟ୍ରିଭିଲ୍, ସେ କଣ ତୁମ ଗାସ୍କନ୍ ଯୁବକ ?''

ଦାର୍‌ତାଗ୍ନାଁ ବୁଝିପାରିଲା ଯେ, ରାଜା ତାକୁ ଡାକୁଛନ୍ତି । ସେ ଆଗକୁ ପାଦେ ଆଗେଇ ଯାଇ ପ୍ରଣତି ନିବେଦନ କଲା ।

''ଟ୍ରିଭିଲ୍, ତୁମେ ମୋତେ କହିଥିଲ ଯେ, ସେ ଜଣେ ଯୁବକ; ମାତ୍ର ମୁଁ ଦେଖୁଛି ଏ ତ ପିଲାଲୋକ ! ଏ କଣ ପ୍ରକୃତରେ ଜୁସାକ୍‌କୁ

ପରାସ୍ତ କରିଛି ?''

''ହଁ ହଜୁର, ବେର୍ଣ୍ଣାଦୋକ୍‌ସକୁ ମଧ୍ୟ ସେ ଦୁଇଥର ଖଣ୍ଡାରେ ଭୁସିଥିଲା; ଫଳରେ ସେ ଅକର୍ମଣ୍ୟ ହୋଇପଡ଼ିଛି।''

ରାଜା ଟିକିଏ ହସି କହିଲେ, ''ଏହା ତ ଅସାଧାରଣ! ଏପରି ହେଲେ ତ ବହୁ ପତ୍ନୀ ପତିହରା ହେବେ ଓ ବହୁ ତରବାରି ଭାଙ୍ଗିବ।'' ରାଜା ତାଙ୍କ ବ୍ୟକ୍ତିଗତ ଦେହରକ୍ଷୀଙ୍କୁ ନିର୍ଦ୍ଦେଶ ଦେଇ କହିଲେ, ''ଲା ଚେଶ୍‌ନେଇ, ତୁମେ ଯାଅ, ମୋର ସବୁ ପକେଟ୍ ଖୋଜି କିଛି ଅର୍ଥ ସଂଗ୍ରହ କର। ଯଦି ପାଇବ ୪୦ ପିସ୍ତୋଲ ମୁଦ୍ରା ଆଣ।'' ସେ ବର୍ତ୍ତମାନ ଦାଗ୍‌ତାୟାଁଙ୍କୁ ଚାହିଁ କହିଲେ, ''ଆଚ୍ଛା ଯୁବକ! ସମୁଦାୟ ଘଟଣା ମୋ ଆଗେ ବର୍ଣ୍ଣନା କର।'' ଦାଗ୍‌ତାୟାଁ ସରଳ ଓ ଜୀବନ୍ତ ଭାବରେ ସମସ୍ତ ବିଷୟ ବର୍ଣ୍ଣନା କଲା। ତାହା ଶୁଣି ରାଜା ବେଶ୍ ଖୁସିହେଲେ। ରାଜା କହିଲେ, ''ମୋର ମନେହୁଏ, କାର୍ଡିନାଲ୍ ମୋ ଆଗରେ ସମସ୍ତ କଥା କହିନାହାନ୍ତି। ବିଚରା ମାତ୍ର ଦୁଇଦିନ ମଧ୍ୟରେ ସାତଜଣ ବ୍ୟକ୍ତି ପୁଣି ତା ଭିତରେ ଦୁଇଜଣ ପ୍ରଧାନ ଯୋଦ୍ଧା ହରାଇଲା। ସବୁ ଠିକ୍ ଅଛି; ବୁଝୁଛଟି ? ତୁମେ ଯଥେଷ୍ଟ ପ୍ରତିଶୋଧ ନେଇପାରିଛ। ତୁମର ସନ୍ତୁଷ୍ଟ ହେବାର କାରଣ ଅଛି।''

ତ୍ରିଭିଲ୍ କହିଲେ, ''ହଜୁର ଯଦି ସନ୍ତୁଷ୍ଟ, ଆମେମାନେ ନିଶ୍ଚୟ ସନ୍ତୁଷ୍ଟ।'' ରାଜା କହିଲେ, ''ମୁଁ ବେଶ୍ ସନ୍ତୁଷ୍ଟ।'' ଏହାପରେ ଲା ଚେଶ୍‌ନେଇ ଆଣିଥିବା ଅର୍ଥକୁ ସେ ଦାଗ୍‌ତାୟାଁଙ୍କୁ ଦେଇ କହିଲେ, ''ଏହାହିଁ ମୋ ସନ୍ତୋଷର ପ୍ରମାଣ।'' ଦାଗ୍‌ତାୟାଁ ଆନନ୍ଦରେ ଅର୍ଥ ଗ୍ରହଣ କରି ରାଜାଙ୍କୁ ଧନ୍ୟବାଦ ଜ୍ଞାପନ କଲା।

ରାଜା ଘଣ୍ଟାକୁ ଚାହିଁ କହିଲେ, ''ବର୍ତ୍ତମାନ ଆଠଟା ବାଜି ତିରିଶ ମିନିଟ୍। ୯ଟା ସମୟରେ ମୋର ଅନ୍ୟ ବ୍ୟକ୍ତିଙ୍କ ସହ ସାକ୍ଷାତ୍ ରହିଛି। ତୁମେମାନେ ବର୍ତ୍ତମାନ ଯାଅ।'' ସେହି ଚାରିଜଣ ଯୁବକ ସେଠାରୁ ଚାଲିଯିବା ପରେ ରାଜା ଅତ୍ୟନ୍ତ ଧୀର ସ୍ୱରରେ କହିଲେ, ''ତ୍ରିଭିଲ୍, ଏହି ଗାସ୍‌କନ୍ ଯୁବକକୁ ଆମେ ସିଧାସଳଖ ମସ୍‌କେଟିଅର୍‌ଶ୍ରେଣୀଭୁକ୍ତ କରିପାରିବାନାହିଁ। ତେଣୁ ତାକୁ ତୁମେ ଶାଳକ ଏସାର୍ଟ୍‌ସଙ୍କ ଅଧୀନରେ ମୋ ରକ୍ଷୀଦଳରେ ଭର୍ତ୍ତି କରିଦିଅ। କାର୍ଡିନାଲ୍‌ଙ୍କ ପ୍ରତିକ୍ରିୟା ମୁଁ ଲକ୍ଷ୍ୟ କରିବି। ସେ ନିଶ୍ଚୟ କ୍ରୋଧାନ୍ୱିତ ହେବେ। ତେବେ ସେଥିପ୍ରତି ମୋର ଖାତିର ନାହିଁ। ଯାହା ଠିକ୍, ମୁଁ ତାହାହିଁ କରୁଛି।''

ଟ୍ରିଭିଲ୍ ରାଜାଙ୍କୁ ପ୍ରଣିପାତ କରି ବିଦାୟ ନେଇ ମସ୍‌କେଟିଅର୍‌ମାନଙ୍କ ସହ ଯୋଗଦେଲେ। ସେ ଆସି ଦେଖିଲେ ଯେ, ରାଜା ଦାର୍‌ତାୟାଁଙ୍କୁ ଦେଇଥିବା ୪୦ ପିସ୍ତୋଲ ମୁଦ୍ରା ସେ ସମସ୍ତଙ୍କ ମଧ୍ୟରେ ବାଣ୍ଟିଦେଇଛି।

ଅଳ୍ପ କିଛିଦିନ ପରେ ଟ୍ରିଭିଲ୍ ଦାର୍‌ତାୟାଁଙ୍କୁ ଡାକି କହିଲେ ଯେ, ତାକୁ ଏସାର୍ଟେସଙ୍କ ଅଧୀନରେ ରାଜାଙ୍କ ରକ୍ଷୀଭାବରେ ନିଯୁକ୍ତି ମିଳିଛି। ଦୁଇବର୍ଷ ତାଲିମ ପରେ ସେ ମସ୍‌କେଟିଅର୍ ସୈନ୍ୟଶ୍ରେଣୀଭୁକ୍ତ ହେବ। ଗର୍ବର ସହିତ ଦାର୍‌ତାୟାଁ ରକ୍ଷୀର ପୋଷାକ ପରିଧାନ କଲା।

## ଦରବାର ଚକ୍ରାନ୍ତ

କ୍ରମେ ଦାର୍‌ତାୟାଁ ଓ ତିନି ମସ୍‌କେଟିଅର୍‌ଙ୍କ ଭିତରେ ବିନ୍ଧୁତା ଅତି ଘନିଷ୍ଠ ହୋଇଉଠିଲା। ଦାର୍‌ତାୟାଁ ଯେତେବେଳେ ଲୋଭର୍ ରାଜପ୍ରାସାଦରେ ତାର କର୍ତ୍ତବ୍ୟ ସଂପାଦନ କରୁଥାଏ, ଉକ୍ତ ତିନିବନ୍ଧୁ ମଧ ତା ସହିତ ଥାଆନ୍ତି। ଦାର୍‌ତାୟାଁ ମଧ ତାର ତିନିବନ୍ଧୁଙ୍କ କର୍ତ୍ତବ୍ୟ ସମ୍ପାଦନ ସମୟରେ ସେମାନଙ୍କୁ ସହଯୋଗ ଦେଉଥିଲା। ଏସାର୍ଟେସ୍‌ଙ୍କର ଉକ୍ତ ଯୁବକ ପ୍ରତି ପ୍ରଥମରୁ କିପରି ଏକ ସଦ୍ଭାବ ଜାତ ହୋଇଥିଲା। ତା'ଛଡ଼ା ଜଣଙ୍କ ପରିବର୍ତ୍ତେ ସେ ଚାରିଜଣଙ୍କୁ ସାଥୀଭାବରେ ପାଇଲେ। ପ୍ରଧାନ କାର୍ଯ୍ୟସ୍ଥଳୀରେ ମଧ ମସ୍‌କେଟିଅର୍‌ମାନଙ୍କ ଗହଣରେ ଉକ୍ତ ତିନିଜଣଙ୍କ ପରି ସେ ମଧ ବେଶ୍ ଜଣାଶୁଣା ହୋଇପଡ଼ିଲା। ଟ୍ରିଭିଲ୍‌ଙ୍କ ପ୍ରଚେଷ୍ଟା ଓ ପ୍ରେରଣାରୁ ଦାର୍‌ତାୟାଁ ନିଜ ପାଇଁ ତଥା ନିଜ ସହଚର ପ୍ଲାଞ୍ଚେଟ ପାଇଁ ଆବଶ୍ୟକୀୟ ପୋଷାକ ଓ ଘୋଡ଼ା ଖରିଦ ନିମନ୍ତେ ଅର୍ଥ ଗ୍ରହଣ କଲା। ଏସାର୍ଟେସ୍ ମଧ ତାକୁ ଆଗତୁରା ଦରମା ମଞ୍ଜୁର କଲେ। ଅର୍ଥାଭାବ ସମୟରେ ସେ ନିଜର ଖର୍ଚ୍ଚପାଇଁ ବନ୍ଧୁମାନଙ୍କ ସାହାଯ୍ୟ ଉପରେ ମଧ ନିର୍ଭର କରୁଥିଲା।

ଦିନେ ଦାର୍‌ତାୟାଁ ଘରେ ବିଶ୍ରାମ ନେଉଛି ଏହି ସମୟରେ ଦରଜାରେ କିଏ ଠକ୍ ଠକ୍ ଶବ୍ଦ କଲା। ପ୍ଲାଞ୍ଚେଟ ଦରଜା ଖୋଲି ଦେଖିଲା, ସୁଦୃଶ୍ୟ ଓ ଉତ୍ତମ ପୋଷାକ ପରିହିତ ଜଣେ ବ୍ୟକ୍ତି ଡାକୁଛନ୍ତି। ପ୍ଲାଞ୍ଚେଟ ସେଠାରୁ ଅନ୍ୟତ୍ର ଚାଲିଯିବା ପରେ ସେ କହିଲେ, ''ମିଷ୍ଟର୍ ଦାର୍‌ତାୟାଁ, ଆପଣ ଅତି ସାହସୀ ବ୍ୟକ୍ତି ବୋଲି ମୁଁ ଶୁଣିବାକୁ ପାଇଛି; ତେଣୁ ମୋର ଏହି ବିପତ୍ତିରେ ଆପଣଙ୍କ ସାହାଯ୍ୟ ପାଇଁ ଦୌଡ଼ିଆସିଛି। ରାଣୀଙ୍କର କୌଣସି

ବ୍ୟକ୍ତିଗତ ପରିଚାରିକା ମୋର ସ୍ତ୍ରୀଙ୍କୁ ପ୍ରଭାତରୁ ଅପହରଣ କରିଛି।''

''କିଏ ନେଲା ?''

''ମୁଁ ସେ ବିଷୟରେ ନିଶ୍ଚିତ ନୁହେଁ। ମୋ ସ୍ତ୍ରୀ ଦେଖିବାକୁ ସୁନ୍ଦରୀ; କିନ୍ତୁ ମୋର ବିଶ୍ୱାସ ଯେ, ଏଥିରେ ପ୍ରେମ ଅପେକ୍ଷା ରାଜନୀତି ଅଧିକ ରହିଛି।''

ଦାର୍ତାୟାଁ ଉତ୍ତର ଦେଲା, ''ରାଜନୀତି ଅପେକ୍ଷା ପ୍ରେମ କମ୍! ଆପଣ କଣ କହୁଛନ୍ତି ?''

''ମୁଁ ଯାହା ବା ସନ୍ଦେହ କରୁଛି, ସେକଥା ଆପଣଙ୍କୁ କହିବି କି ନାହିଁ କିଛି ସ୍ଥିର କରିପାରୁନାହିଁ।''

ଦାର୍ତାୟାଁ ସାମାନ୍ୟ ବିରକ୍ତ ହୋଇ କହିଲା, ''ଯଦି ସେପରି କିଛି ଥାଏ, ତାହାହେଲେ ଆଉ କିଛି କହନ୍ତୁ ନାହିଁ।''

''ନା ଆଜ୍ଞା, ନା; ଆପଣ ଜଣେ ସାଧୁ ଓ ସଚ୍ଚୋଟ ଯୁବକ। ମୁଁ ଆପଣଙ୍କୁ ଅବଶ୍ୟ ବିଶ୍ୱାସ କରିବି। ମୋର ବିଶ୍ୱାସ, ଜଣେ ଖ୍ୟାତିସମ୍ପନ୍ନା ଭଦ୍ରମହିଳାଙ୍କ ଷଡ଼ଯନ୍ତ୍ରରୁ ମୋର ସ୍ତ୍ରୀ ଅପହୃତା ହୋଇଛନ୍ତି।''

ଦାର୍ତାୟାଁଙ୍କୁ ଦରବାରର ଷଡ଼ଯନ୍ତ୍ରାଦି ବିଷୟ ବେଶ୍ ମାଲୁମ୍ ଥିଲା। ସେ କହିଲା, ''ମାଡାମ୍ ଡି. ବୋ. ତ୍ରେସି ?''

''ତାଙ୍କଠାରୁ ଅଧିକ ଆଜ୍ଞା।''

''ମାଡାମ୍ ଡି. ଆଗୁଲନ୍ ?''

''ତାଙ୍କଠାରୁ ଆହୁରି ଅଧିକ।''

''ତାହାହେଲେ ଡ୍ୟୁକ୍‌ପତ୍ନୀ ?''

''ତାଙ୍କଠାରୁ ଯଥେଷ୍ଟ ଉଚ୍ଚତର।''

ଦାର୍ତାୟାଁ ଅଳ୍ପ ଟିକିଏ ଭାବନାରେ ପଡ଼ିଗଲା ଓ କହିଲା, ''ତାହାହେଲେ . . .''

ଭଦ୍ରବ୍ୟକ୍ତି ଜଣଙ୍କ ଭୀତ ହୋଇ କହିଲେ, ''ହଁ ଆଜ୍ଞା, ସେ ହେଉଛନ୍ତି ନିଜେ ରାଣୀ!''

''ତେବେ କାହା ସହିତ ?''

''କାହା ସହିତ ? କାହିଁକି, ଡ୍ୟୁକ୍ ନିଜେ।''

''ବକିଙ୍ଗ୍‌ହାମ୍‌ର ଡ୍ୟୁକ୍ ?''

''ହଁ ଆଜ୍ଞା !''

''ଏ କଥା ଆପଣ କେମିତି ଜାଣିଲେ ? ମୋତେ ସବୁକଥା କହନ୍ତୁ।''

"ଏମ୍. ଲାପୋର୍ଟ ବିଷୟଟିକୁ ମୋ ସ୍ତ୍ରୀ ଆଗରେ କହିଲେ ଓ ସେ ମୋତେ କହିଲେ। ସେ ମୋ ସ୍ତ୍ରୀଙ୍କର ଧର୍ମପିତା, ରାଣୀଙ୍କର ବ୍ୟକ୍ତିଗତ କର୍ମଚାରୀ। ରାଣୀ ଜଣେ ବିଶ୍ୱାସୀ ମହିଳା ଖୋଜୁଥିଲେ। ସେ ମୋ ସ୍ତ୍ରୀଙ୍କୁ ନେଇ ରାଜାଙ୍କ ପାଖରେ ନିଯୁକ୍ତ କଲେ। ଆପଣ ଜାଣନ୍ତି, ଏହି ହତଭାଗିନୀ ରାଣୀ ରାଜାଙ୍କ ଦ୍ୱାରା ଅପମାନିତା ହୋଇଥିଲେ। 'ରାଣୀ ବିଶ୍ୱାସ କରନ୍ତି ଯେ, ବକିଙ୍ଗ୍‌ହାମ୍‌ର ଡ୍ୟୁକ୍‌ଙ୍କ ପାଖକୁ କେହି ତାଙ୍କ ନାମରେ ଚିଠି ଲେଖିଛି।"

"ଏକ ପ୍ରତାରଣାର ପତ୍ର।"

"ହଁ। ତାଙ୍କୁ ପାରିସ୍ ଆଣି ତାଙ୍କ ନିଜ ପାଇଁ ଓ ରାଣୀଙ୍କ ପାଇଁ ଗୋଟାଏ ଫାଶ ବସାଇବେ।"

"ଆଚ୍ଛା, ଏସବୁଥିରେ ଆପଣଙ୍କ ସ୍ତ୍ରୀଙ୍କର ବା କ'ଣ ଅଛି ?"

"ରାଣୀଙ୍କ ପ୍ରତି ତାଙ୍କର ଅନୁରକ୍ତି ବେଶ୍ ଜଣାଶୁଣା। କାର୍ଡିନାଲ୍‌ଙ୍କ ଲୋକମାନେ ମୋ ସ୍ତ୍ରୀଙ୍କୁ ରାଣୀଙ୍କଠାରୁ ଦୂରରେ ରଖିବାକୁ ଚାହାନ୍ତି। ରାଣୀଙ୍କ ଗୁପ୍ତକଥାମାନ ମୋ ସ୍ତ୍ରୀ ହୁଏତ ବାହାରେ ପ୍ରକାଶ କରିଥିବା କଥା କହି ତାଙ୍କ ମନରେ ଭୀତି ସଞ୍ଚାର କରାଇବା ସେମାନଙ୍କ ଉଦ୍ଦେଶ୍ୟ ଥିଲା। ହୁଏତ ମୋ ସ୍ତ୍ରୀ ରାଣୀଙ୍କ ପାଖରେ ଜଣେ ଗୁପ୍ତଚରର କାର୍ଯ୍ୟ କରୁଥିଲେ ବୋଲି ଧାରଣା ଦିଆଯାଇପାରେ।"

"ସମ୍ଭବତଃ ହୋଇପାରେ; କିନ୍ତୁ ତାଙ୍କୁ କିଏ ଅପହରଣ କଲା ?"

"ମୋର ମନେହୁଏ, ସେ କାର୍ଡିନାଲ୍‌ଙ୍କର ଜଣେ ଗୁପ୍ତଚର ହୋଇପାରେ। ମୋ ସ୍ତ୍ରୀ ବଜାର କଲାବେଳେ ତାଙ୍କୁ ଜଣେ ବ୍ୟକ୍ତି ବରାବର ଲକ୍ଷ୍ୟ କରୁଥିଲେ ଓ ସେ ମଧ୍ୟ ତାଙ୍କୁ ମୋତେ ଚିହ୍ନେଇ ଦେଇଥିଲେ।"

"ଆପଣ ସେ ଲୋକଙ୍କୁ ଚିହ୍ନାଇ ଦେଇପାରିବେ କି ?"

"ଖୁବ୍ ସହଜରେ। ସେ ଜଣେ ଦୀର୍ଘକାୟ ଭଦ୍ର ଶାନ୍ତ ବ୍ୟକ୍ତି। ବିଶେଷ ଗୋରା ନୁହନ୍ତି, ମୁଣ୍ଡରେ କୃଷ୍ଣ କେଶ, ଚଞ୍ଚଳ ଚାହାଣି ଓ ଗୋଟିଏ ଗାଲରେ ତାଙ୍କର କଟାଚିହ୍ନ ଅଛି।"

ଦାର୍ତାୟାଁ କହିଲେ, "କାହିଁ ? ସେ ବ୍ୟକ୍ତିଜଣକ ମିଉଙ୍ଗ୍‌ଠାରେ ମୋ ପାଖରୁ ଖସି ଦୌଡ଼ିପଳାଇଥିଲେ।"

ବର୍ତ୍ତମାନ ସବୁକଥା ଜଣାପଡ଼ିଗଲା। ଯଦି ସେହି ବ୍ୟକ୍ତି ସେ ହୋଇଥାଏ, ତାହାହେଲେ ଏକା ଟେକାରେ ଦୁଇଟି ପକ୍ଷୀ ମରିବେ। ଦାର୍ତାୟାଁ ପଚାରିଲା, "ଆପଣଙ୍କ ସ୍ତ୍ରୀ ଯେ ଅପହୃତା, ଆପଣ କେମିତି ଜାଣିଲେ ?"

"ଏକଥା ମୋତେ ଲାପୋର୍ଟ କହିଲେ ଓ ଆଜି ସକାଳେ ମଧ..." ଆଗନ୍ତୁକ ହଠାତ୍ ଅଟକିଗଲେ– ଅତିଶୟ ଡରିଗଲେ ଯେପରି।

ଦାର୍ତାୟାଁ ସଙ୍ଗେ ସଙ୍ଗେ କହିଲା, "କହନ୍ତୁନା, ବର୍ତ୍ତମାନ ଆଉ କଥାକୁ ଲୁଚାଇ ଲାଭ ନାହିଁ।"

"କଥା ଉଠାଇନେବି। ମୁଁ ବୋନାସିଏକ୍ସ– ନାମ ନେଇ କହୁଛି।"

ଦାର୍ତାୟାଁ କହିଲା, "ତାହା କ'ଣ ଆପଣଙ୍କ ନାମ? ମୋତେ ତ କାହିଁ ଏହା ପରିଚିତ ଜଣାଯାଉଛି।"

"ନିଶ୍ଚିତ ଭାବରେ ଆଜ୍ଞା! ଆପଣ ମୋ ଘରେ ଭଡ଼ା ଅଛନ୍ତି।"

ଦାର୍ତାୟାଁ କହିଲା, "ଓ, ଆପଣ ତାହାହେଲେ ଗୃହମାଲିକ।"

"ହଁ ଆଜ୍ଞା, ଆପଣ ଏଠାରେ ତିନିମାସ ରହିଲେଣି; ମାତ୍ର ଘରଭଡ଼ା ଦେଇନାହାନ୍ତି। ଲୋଭର୍ ରାଜପ୍ରାସାଦରେ ଆପଣ ସର୍ବଦା ବ୍ୟସ୍ତ ରହୁଥିବାରୁ ମୁଁ ଆପଣଙ୍କୁ ଏହି ଛୋଟ କଥାଟି ମନେପକାଇଦେବାକୁ ଉଚିତ ମନେକରିନାହିଁ।"

ଦାର୍ତାୟାଁ କହିଲା, "ଆପଣଙ୍କୁ ଏଥିପାଇଁ ଧନ୍ୟବାଦ। ମୁଁ ଆପଣଙ୍କର କି ସେବା କରିପାରିବି କହନ୍ତୁ।" କମ୍ପିତ ହାତରେ ବୋନାସିଏକ୍ସ ହଠାତ୍ ଦାର୍ତାୟାଁଙ୍କ ହାତରେ ଖଣ୍ଡେ ଚିଠି ଗୁଞ୍ଜିଦେଲେ। ସେଥିରେ ଲେଖାଥିଲା– 'ତୁମ ସ୍ତ୍ରୀଙ୍କର ଅନୁସନ୍ଧାନ କରନାହିଁ। ତାଙ୍କର ଆବଶ୍ୟକତା ନ ପଡ଼ିଲେ ତାଙ୍କୁ ଆପେ ଆପେ ଛାଡ଼ିଦିଆଯିବ। ତୁମେ ତାଙ୍କୁ ଖୋଜିବାକୁ ସାମାନ୍ୟମାତ୍ର ଚେଷ୍ଟାକଲେ, ତୁମର ପ୍ରାଣ ରହିବ ନାହିଁ।'

ବୋନାସିଏକ୍ସ କହିଲେ, "ମୁଁ ଯୁଦ୍ଧପ୍ରିୟ ବ୍ୟକ୍ତି ନୁହଁ। ଆପଣ କିନ୍ତୁ ଯୁବକ, ସାହସୀ ଓ ସାଧୁ, ମସ୍କେଟିଅର୍‌ମାନଙ୍କଦ୍ୱାରା ପରିବେଷ୍ଟିତ। ଏମାନେ ଟ୍ରିଭିଲ୍‌ଙ୍କ ଲୋକ ହୋଇଥିବାରୁ କାର୍ଡିନାଲ୍‌ଙ୍କର ଶତ୍ରୁ ନିଶ୍ଚୟ। ମୋର ବିଶ୍ୱାସ, ଆପଣ ଓ ଆପଣଙ୍କ ବନ୍ଧୁଗଣ ନିଶ୍ଚୟ ରାଣୀଙ୍କ ସେବା କରିବେ ଓ କାର୍ଡିନାଲ୍‌ଙ୍କୁ ଶାସ୍ତି ଦେବେ।"

ଦାର୍ତାୟାଁ କହିଲା– "ସମ୍ଭବତଃ..."

"ମୁଁ ମଧ ମୋର ଘରଭଡ଼ା ଦାବି କରୁନାହିଁ।"

"ହଁ-ହଁ, ଆପଣ ସେକଥା ପରିଷ୍କାର ବୁଝାଇ ଦେଇଛନ୍ତି। ମୁଁ ସନ୍ତୋଷଲାଭ କରିଛି।"

"ଆପଣ ସେ ପର୍ଯ୍ୟନ୍ତ ଏହି ଘରେ ଥାଆନ୍ତୁ। ମୁଁ ଭଡ଼ା..."

"ବେଶ୍, ବେଶ୍।"

"ଏହାଛଡ଼ା ଆପଣଙ୍କର ଅର୍ଥାଭାବ ହେଲେ ମୁଁ ପଚାଶ ପିସ୍ତୋଲ

ଦେବାପାଇଁ ପ୍ରସ୍ତୁତ।''

ଦାର୍ତାୟାଁ ଓ ବୋନାସିଏକ୍ସ ରାସ୍ତାରେ ଇମ୍ପକୋଟ୍‌ପିନ୍ଧା ଜଣେ ଲୋକ ଯାଉଥିବାର ଦେଖିଲେ ଓ ଉଭୟେ ନିଜ ନିଜ ଶତ୍ରୁକୁ ଚିହ୍ନିପାରି ଏକାଥରକେ କହିଲେ – 'ଏ ସେହି ବ୍ୟକ୍ତି।' ଦାର୍ତାୟାଁ ନିଜର ତରବାରି ଧରି ଘରୁ ବାହାରି ଯାଉ ଯାଉ କହିଲା, ''ଏଥର ସେ ମୋ ଆଗରୁ ଖସି ଯାଇ ପାରିବନାହିଁ।''

ଏହି ସମୟରେ ଆଥସ୍ ଓ ପୋର୍ଥସ୍ ତା ସହିତ ସାକ୍ଷାତ୍ ପାଇଁ ଆସି ଦ୍ୱାରପାଖରେ ପହଞ୍ଚିଗଲେ। ସେମାନେ ଅଲଗା ହୋଇଗଲେ ଓ ସେମାନଙ୍କ ମଧ୍ୟଦେଇ ବିଜୁଳି ଭଳି ଦାର୍ତାୟାଁ ଚାଲିଗଲେ। ପୋର୍ଥସ୍ କହିଉଠିଲେ, ''ଏ କଣ? କୁଆଡ଼େ ଚାଲିଛ?'' ଦାର୍ତାୟାଁ କହି କହି ଚାଲିଗଲା – ''ମିଏଙ୍ଗ୍‌ର ସେ ଲୋକ।''

ଆଥସ୍ ଓ ପୋର୍ଥସ୍ ଦାର୍ତାୟାଁର କୋଠରିକୁ ପ୍ରବେଶ କଲେ। ସେତେବେଳକୁ ବୋନାସିଏକ୍ସ ଚାଲିଯାଇଥିଲା।

## ଜଣଙ୍କ ପାଇଁ ସମସ୍ତେ ଓ ସମସ୍ତଙ୍କ ପାଇଁ ଜଣେ

ମୁହଁରେ କଟାଦାଗଥିବା ସେହି ବ୍ୟକ୍ତିକୁ ଦାର୍ତାୟାଁ ଖୋଜୁଥିବା ସମୟରେ ଆରାମିସ୍ ଆସି ପହଞ୍ଚିଲେ। ଦାର୍ତାୟାଁ ନିଜ ବସାକୁ ଲେଉଟି ଆସି ଦେଖିଲା ଯେ ତାର ତିନିବନ୍ଧୁ ତାଙ୍କ ପାଇଁ ଅପେକ୍ଷାକରି ବସିଛନ୍ତି। ଦାର୍ତାୟାଁ ପାଖ ଚୌକି ଉପରକୁ ତରବାରିଟାକୁ ଫିଙ୍ଗିଦେଇ କପାଳରୁ ଝାଳ ପୋଛି କହିଲା – ''ସେ ଲୋକ ନିଶ୍ଚୟ ସେହି ବଦ୍‌ମାସ। ଚାହୁଁ ଚାହୁଁ ସେ ଲୋକଟା କୁଆଡ଼େ ଚାଲିଗଲା। ବଡ଼ ଦୁଃଖର କଥା, ତା ସହିତ ଆମର ଅର୍ଥପ୍ରାପ୍ତିର ଏକ ସୁବର୍ଣ୍ଣ ସୁଯୋଗ ଆମେ ହରାଇବସିଲେ।''

ପୋର୍ଥସ୍ ହତାଶ ସ୍ୱରରେ ପଚାରିଲେ, ''ସେ କେମିତି କଥା?''

ଦାର୍ତାୟାଁ ତାର ପରିଚାରକକୁ ଡାକି କହିଲା, ''ପ୍ଲାଞ୍ଚେଟ୍, ଆମ ଘରବାଲାଙ୍କ ପାଖକୁ ଯାଅ ଓ ତାଙ୍କଠାରୁ ଅଧଡର୍ଜନେ ମଦ ବୋତଲ ଆଣ।'' ପୋର୍ଥସ୍ ନିଜର ଓଠ ଚାଟି କହିଲେ, ''ନା-ନା, ତୁମେ ତାଙ୍କଠାରୁ ବହୁତ କିଛି ଧାରିସାରିଲଣି।'' ଦାର୍ତାୟାଁ ଉତ୍ତର ଦେଲା, ''ନିଶ୍ଚୟ! ତଥାପି ବ୍ୟସ୍ତ ହୁଅନା।''

ମଦ୍ୟପାନ ସମୟରେ ଦାଗ୍ତାୟାଁ ଗୃହମାଲିକଙ୍କ ସହ ଯାହା କିଛି କଥାବାର୍ତ୍ତା ହୋଇଥିଲା ସେ ସମସ୍ତ ସେମାନଙ୍କ ଆଗରେ ବର୍ଣ୍ଣନା କଲା। ସେ ଯେତେବେଳେ କହିଲା ଯେ, ମାଡାମ୍ ବୋନାସିଏକ୍ସଙ୍କୁ ଜଲିମିଲ୍‌ର୍‌ଠାରେ ଯେଉଁ ଲୋକ ସହିତ ତାର କଳହ ହୋଇଥିଲା, ସେହି ବ୍ୟକ୍ତି ନେଇଯାଇଛି– ବନ୍ଧୁମାନେ ମନଦେଇ ଶୁଣିଲେ। ଦାଗ୍ତାୟାଁ ଶେଷରେ କହିଲା– "ମାଡାମ୍ ବୋନାସିଏକ୍ସଙ୍କ ବିଷୟରେ ଆମର ବ୍ୟସ୍ତ ହେବା ଦରକାର ନାହିଁ; ବରଂ ରାଣୀଙ୍କ ବିଷୟରେ ଆମେ ବିଶେଷ ବ୍ୟଗ୍ର; କାରଣ ହିଂସ୍ର ରାଜା ଓ ସେ କୁଚକ୍ରୀ କାର୍ଡିନାଲ୍‌ଙ୍କ ଯୋଗେ ରାଣୀଙ୍କର ସମସ୍ତ ବନ୍ଧୁଙ୍କୁ ଜଣଙ୍କ ପରେ ଜଣେ କରି ଦରବାରରୁ ବିଦାୟ କରିଦିଆଯାଉଛି।"

ପୋର୍ଥସ୍ ମନ୍ତବ୍ୟ ଦେଲେ, "ରାଣୀ ସ୍ପେନ୍ ଓ ଇଂଲଣ୍ଡ ପ୍ରତି ଏତେ ବନ୍ଧୁତା ପ୍ରଦର୍ଶନ କରୁଛନ୍ତି ବା କାହିଁକି?" ଆରାମିସ୍ କହିଲେ– "ସ୍ପେନ୍ ରାଣୀଙ୍କର ନିଜର ଦେଶ, ତେଣୁ ସ୍ପେନ୍ ଓ ତାହାର ଅଧିବାସୀମାନଙ୍କ ପ୍ରତି ରାଣୀଙ୍କର ଶ୍ରଦ୍ଧା ଜାତ ହେବା ସ୍ୱାଭାବିକ; କିନ୍ତୁ ଇଂଲଣ୍ଡ କଥା ଯାହା କହିଲେ, ରାଣୀ ଇଂଲଣ୍ଡକୁ ଭଲପାଆନ୍ତି ନାହିଁ, ବରଂ ଜଣେ ଇଂରେଜଙ୍କୁ ଭଲ ପାଆନ୍ତି।" ପୋର୍ଥସ୍ କହିଲେ, "ମୁଁ ଶପଥ କରି କହିପାରେ ଯେ, ବକିଙ୍ଗ୍‌ହାମ୍ ଜଣେ ବେଶ୍ ସୁନ୍ଦର ବ୍ୟକ୍ତି। ସେଭଳି ଜଣେ ଉଦାରଚେତା ବ୍ୟକ୍ତି ମୁଁ ଦେଖିନାହିଁ।"

ସେତିକିବେଳକୁ ଶିଡ଼ି ଉପରେ କାହାର ପାଦଶବ୍ଦ ଶୁଣାଗଲା, ଦରଜାଟା ହଠାତ୍ ଖୋଲିଗଲା ଓ ଗୃହମାଲିକ ଘର ଭିତରକୁ ଦୌଡ଼ି ପ୍ରବେଶକଲେ। ସେ ଧଇଁସଇଁ ହୋଇ କହିଲେ, "ଭଦ୍ରବ୍ୟକ୍ତିଗଣ, ମୋତେ ଗ୍ରେପ୍ତାର କରିବାପାଇଁ ଚାରିଜଣ ଲୋକ ଆସିଛନ୍ତି।" ଦାଗ୍ତାୟାଁ ତାର ବନ୍ଧୁମାନଙ୍କୁ ତରବାରିଗୁଡ଼ିକୁ ଖୋଲ ଭିତରେ ରଖିବାକୁ ଇସାରା ଦେଇ କହିଲେ, "ଅପେକ୍ଷା କରନ୍ତୁ। ବର୍ତ୍ତମାନ ସାହସର ଆବଶ୍ୟକତା ନାହିଁ; ବିଜ୍ଞତାହିଁ ଦରକାର।" ଠିକ୍ ପରେ ପରେ କାର୍ଡିନାଲ୍‌ଙ୍କ ଚାରିଜଣ ଭୃତ୍ୟ ଗୃହ ଦରଜା ପାଖରେ ଦେଖାଦେଲେ; କିନ୍ତୁ ମସ୍କେଟିଅର୍ ତିନିଜଣଙ୍କୁ ଦେଖି ଟିକିଏ ଥମିଗଲେ। ସେମାନଙ୍କ ମଧ୍ୟରେ ନେତା ଭଳି ଦେଖାଯାଉଥିବା ବ୍ୟକ୍ତିଟି କହିଲା, "ଭଦ୍ରବ୍ୟକ୍ତିଗଣ, ଆଦେଶ ପାଳନ କରିବାରେ ଆପଣମାନେ ଆମକୁ କୌଣସି ପ୍ରକାର ବାଧା ଦେବେନାହିଁ ବୋଲି ଆମେ ଆଶା କରୁ।"

ଦାଗ୍ତାୟାଁ କହିଲା, "ବରଂ ଦରକାର ପଡ଼ିଲେ ଆମେମାନେ ଆପଣଙ୍କୁ ସାହାଯ୍ୟ କରିବୁ।" ଭୟରେ ଥରୁଥିବା ଗୃହମାଲିକ କହିଲେ, "କିନ୍ତୁ ଆପଣ

ପ୍ରତିଜ୍ଞାବଦ୍ଧ ହୋଇଥିଲେ ଯେ—'' ଦାର୍‌ତାୟାଁ ଚୁପ୍ ଚୁପ୍ କରି କହିଲା, ''ଚୁପ୍ ରହନ୍ତୁ! ଆମେମାନେ ମୁକ୍ତ ଥିଲେ ସିନା ଆପଣଙ୍କୁ ସାହାଯ୍ୟ କରିବୁ। ଆମେମାନେ ଯଦି ଏମାନଙ୍କୁ ଆକ୍ରମଣ କରୁ, ସେମାନେ ନିଶ୍ଚୟ ସାହାଯ୍ୟ ପାଇଁ ଡାକଦେବେ ଓ ଆମେମାନେ ମଧ୍ୟ ଗ୍ରେପ୍ତାର ହେବୁ। କିଛି ଭୟ କରନ୍ତୁ ନାହିଁ। ଦିନଅଧକରେ ଆପଣ ନିଶ୍ଚୟ ମୁକ୍ତ ହେବେ।''

''ତଥାପି ଜଣାଯାଉଛି—''

ଦାର୍‌ତାୟାଁ ଗୃହମାଲିକଙ୍କୁ କହିବାକୁ ଆଉ ସମୟ ନ ଦେଇ ରକ୍ଷୀମାନଙ୍କୁ ଡାକି କହିଲା, ''ଯାଙ୍କୁ ନେଇଯାଆନ୍ତୁ ଓ ଯେତେ ସମୟ ପାରନ୍ତି ବନ୍ଦୀ କରି ରଖନ୍ତୁ। ତାହାହେଲେ ଭଡ଼ାପାଇଁ ସେ ମୋତେ ଆଉ ବ୍ୟସ୍ତ କରିବେ ନାହିଁ।'' ରକ୍ଷୀମାନେ ବନ୍ଦୀକୁ ନେଇ ଯାଉଥିବା ସମୟରେ ଏହି କଥାକୁ ପରିହାସ ମନେକରି ହସିଉଠିଲେ।

ତା'ପରେ ଦାର୍‌ତାୟାଁ ତାର ସାଥୀମାନଙ୍କୁ କହିଲା— ''ବର୍ତ୍ତମାନ ଗୃହମାଲିକର ପତ୍ନୀଙ୍କ ସନ୍ଧାନ ନେବାକୁ ହେବ। ଦାର୍‌ତାୟାଁ ତାର ତରବାରି ଉନ୍ମୁକ୍ତ କରି ଓ ତାର ସମ୍ମୁଖରେ ସିଧାଭାବରେ ଧରି କହିଲା, ''ଆମେ ସମସ୍ତେ ଜଣକ ପାଇଁ ଓ ପ୍ରତ୍ୟେକେ ସମସ୍ତଙ୍କ ପାଇଁ— ଏହା ଆମର ଶପଥ।'' ତିନି ମସ୍କେଟିଅର୍ ବନ୍ଧୁ ସେମାନଙ୍କ ତରବାରିଗୁଡ଼ିକ ମଧ୍ୟ ଉନ୍ମୁକ୍ତ କଲେ ଓ ବୃତ୍ତାକାରରେ ଠିଆହୋଇ ତରବାରିଗୁଡ଼ିକୁ ଛନ୍ଦିଦେଇ ଶପଥ କଲେ— ''ଜଣକ ପାଇଁ ସମସ୍ତେ ଓ ସମସ୍ତଙ୍କ ପାଇଁ ଜଣେ।'' ବନ୍ଧୁମାନେ ଯିବାକୁ ବାହାରିବାରୁ ଦାର୍‌ତାୟାଁ କହିଲା, ''ଆସ, ବର୍ତ୍ତମାନଠାରୁ ଯତ୍ନ କରିବା। କାର୍ଡିନାଲ୍ ବିରୁଦ୍ଧରେ ଆମେ ଚାରିଜଣ।''

## ମୂଷା-ଯନ୍ତା

ସେ ସମୟରେ ଫ୍ରାନ୍ସରେ ଯଦି କୌଣସି ବ୍ୟକ୍ତିକୁ ଦୋଷୀ ବୋଲି ସନ୍ଦେହ କରାଯାଉଥିଲା, ତେବେ ତାକୁ ଗୁପ୍ତଭାବରେ ଗିରଫ କରାଯାଉଥିଲା। ତା'ପରେ କେତେକ ଗୁପ୍ତଚର ଗିରଫ ହୋଇଥିବା ବ୍ୟକ୍ତିଙ୍କ ଘରେ ଲୁଚିରହୁଥିଲେ ଓ ସେ ଘରକୁ ଯେଉଁମାନେ ଆସୁଥିଲେ, ସେ ସମସ୍ତଙ୍କୁ ଗିରଫ କରୁଥିଲେ। ଏହାକୁ ମୂଷା-ଯନ୍ତା କୁହାଯାଉଥିଲା। ବୋନାସିଏକ୍‌ସଙ୍କ ଗିରଫଦାରି ପରେ ତାଙ୍କ ଗୃହଟି ଗୋଟିଏ ମୂଷା-ଯନ୍ତାରେ ପରିଣତ ହୋଇଗଲା। ସେଠାକୁ

ଯେ ଯାଉଥିଲା, ତାକୁ ଧରିନିଆଯାଇ କାର୍ଡିନାଲ୍‌ଙ୍କ ଗୁପ୍ତ ପୋଲିସଙ୍କଦ୍ୱାରା ନାନାପ୍ରକାର ପ୍ରଶ୍ନ ପଚରାଯାଉଥିଲା। ଅନ୍ୟ ଏକ ବାଟ ଓ ଶିଡ଼ିଦେଇ ଗଲେ ଦାର୍‌ତାୟାଁର ଗୃହରେ ପହଞ୍ଚିବାକୁ ହେଉଥିଲା। ସେଠାକୁ ମସ୍‌କେଟିଅର୍‌ମାନଙ୍କ ଛଡ଼ା ଆଉ କେହି ଯାଉନଥିଲେ। ଦାର୍‌ତାୟାଁ ଏହି ମୂଷା-ଯନ୍ତା ବିଷୟ ଜାଣିଥିଲା ଓ ସେଠାରେ ଯାହା ଯାହା ଘଟୁଥିଲା, ତା ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିଥିଲା। ସେ ଘରକୁ ଯେଉଁ ବ୍ୟକ୍ତିମାନେ ଆସି ବନ୍ଦୀ ହେଉଥିଲେ, ତାର ଝରକାଦେଇ ସେମାନଙ୍କୁ ସେ ଦେଖୁଥିଲା। ତାର କୋଠରିର ଗୋଟିଏ ସ୍ଥାନରୁ ଏକ ପଟା ଘୁଞ୍ଚାଇ ତଳ ମହଲାରେ ଯାହା କିଛି କଥାବାର୍ତ୍ତା ହେଉଥିଲା, ସେ ତାହା ମଧ୍ୟ ଶୁଣିପାରୁଥିଲା।

ଗୃହମାଲିକ ଗିରଫ ହେବାର ପରଦିନ ରାତି ନଅଘଣ୍ଟା ସମୟରେ ତଳମହଲା ଦ୍ୱାରରେ କେହି ଠକ୍ ଠକ୍ କରୁଥିବା ଦାର୍‌ତାୟାଁ ଶୁଣିପାରିଲା। ଦରଜା ସଙ୍ଗେ ସଙ୍ଗେ ଖୋଲିଗଲା ଓ ପରମୁହୂର୍ତ୍ତରେ ବନ୍ଦ କରାଗଲା। ମୂଷା-ଯନ୍ତାରେ ଆଉ ଗୋଟିଏ ମୂଷା ପଡ଼ିଲା। ଦାର୍‌ତାୟାଁ ତାର ଗୁପ୍ତ କଣାବାଟେ ଜଣେ ନାରୀର କଣ୍ଠସ୍ୱର ଓ ତା'ପରେ ଧସ୍ତାଧସ୍ତିର ଶବ୍ଦ ଶୁଣିଲା। ସେ ମନକୁ ମନ କହିଲା, "ହେ ଭଗବାନ, ଏ ଜଣେ ସ୍ତ୍ରୀଲୋକ! ସେମାନେ ବଳପ୍ରୟୋଗ କରି ନିଶ୍ଚୟ ତାକୁ ତନଖି କରୁଛନ୍ତି ବଦ୍‌ମାସଗୁଡ଼ାକ!" ଦାର୍‌ତାୟାଁକୁ ଶୁଣାଗଲା, "ଆପଣମାନେ ଜାଣିରଖନ୍ତୁ ଯେ, ମୁଁ ଏହି ଘରର ଗୃହକର୍ତ୍ତ୍ରୀ। ମୁଁ ହେଉଛି ଶ୍ରୀମତୀ ବୋନାସିଏକ୍‌ସ। ମୁଁ ରାଣୀଙ୍କ ସେବିକା।" ଦାର୍‌ତାୟାଁ ମନେ ମନେ କହିଲା– 'ହାୟ! ଶ୍ରୀମତୀ ବୋନାସିଏକ୍‌ସ, ଆମେ ଯାହାକୁ ଖୋଜୁଛୁ?'

ତଳୁ ଆସୁଥିବା ସ୍ୱର କ୍ରମେ କ୍ଷୀଣରୁ କ୍ଷୀଣତର ହେଲା। ଜଣେ ସ୍ତ୍ରୀଲୋକ ଚାରିଜଣ ଗୁଣ୍ଡାଙ୍କୁ କେତେ ସମୟ ଅବା ବାଧାଦେଇପାରିବ। ଦାର୍‌ତାୟାଁ ପ୍ଲାଞ୍ଚେଟ୍‌କୁ ଡାକି କହିଲା, "ସେମାନେ ନିଶ୍ଚୟ ତାଙ୍କ ହାତ ବାନ୍ଧିପକାଇଥିବେ ଏବଂ ତାଙ୍କୁ ଟାଣିନେଇଯିବେ।" ଏହା କହି ସେ ତାର ତରବାରି ନେଇ ଝରକା ନିକଟକୁ ଡେଇଁପଡ଼ି ଦୌଡ଼ିଗଲା।

ଦାର୍‌ତାୟାଁ କୌଣସି ପ୍ରକାର ଅସୁବିଧାର ସମ୍ମୁଖୀନ ନ ହୋଇ ଉପର ମହଲାରୁ ତଳକୁ ଚାଲିଆସିଲା ଓ ବୋନାସିଏକ୍‌ସଙ୍କ ଦରଜାରେ ଜୋର୍‌ରେ ଆଘାତ କଲା। ସେ ନିଜକୁ ନିଜେ କହିଲା, "ମୁଁ ନିଶ୍ଚୟ ଯିବି ଓ ନିଜକୁ ଧରାଦେବି। କିନ୍ତୁ ଏହି ବଖରାରେ ଥିବା ବିରାଡ଼ିମାନେ ନିଶ୍ଚୟ ବୁଝିବେ ଯେ, ଏହି ମୂଷାଟିର ମଧ୍ୟ ପଞ୍ଜା ଅଛି। ଏହି ସମୟରେ ଦରଜାଟି

ଖୋଲିଗଲା। ଦାର୍‌ତାୟାଁ ମୁକ୍ତ ତରବାରି ଧରି ଝଡ଼ଭଳି ଗୃହ ମଧ୍ୟରେ ପ୍ରବେଶ କଲା। ଅଳ୍ପ କେତେ ମୁହୂର୍ତ୍ତ ପରେ ବୋନାସିଏକ୍‌ସଙ୍କ ଘର ଭିତରୁ ତୀବ୍ର ଶବ୍ଦ, ପଦଧ୍ୱନି, ତରବାରିର ଝନତ୍କାର ଶୁଣାଗଲା ଓ ଦରଜା ଖୋଲି ଚାରିଜଣ ବ୍ୟକ୍ତି ଭୟରେ ଦୌଡ଼ି ଚାଲିଗଲେ; ସତେ ଯେପରି ତାଙ୍କୁ ଭୂତ ଗୋଡ଼ାଉଛି।''

ଲୋକ ଚାରିଟାଙ୍କୁ ତଡ଼ିଦେଇ ଦାର୍‌ତାୟାଁ ଦରଜା ବନ୍ଦ କରିଦେଲା ଓ ଶ୍ରୀମତୀ ବୋନାସିଏକ୍‌ସଙ୍କ ଆଡ଼କୁ ଦୃଷ୍ଟି ପକାଇଲା। ସେ ଗୋଟିଏ ଆରାମଚୌକିରେ ଅର୍ଦ୍ଧଚେତନ ଅବସ୍ଥାରେ ବସିରହିଥିଲେ। ତଳେ ତାଙ୍କର ଅତି ନିକଟରେ ଧଳା ଅତି ସୂକ୍ଷ୍ମ ବସ୍ତ୍ରରେ ରୁମାଲଖଣ୍ଡେ ପଡ଼ିଥିବାର ସେ ଦେଖିଲା ଓ ସେଥିରେ କାହାର ଦସ୍ତଖତ ବୁଣାଯାଇଥିଲା। ଏହା ପରିଷ୍କାର କଥା ଯେ, ଏ ରୁମାଲଖଣ୍ଡକ ଶ୍ରୀମତୀ ବୋନାସିଏକ୍‌ସଙ୍କ ଭଳି ଜଣେ ସାଧାରଣ ସେବିକାର ହୋଇନପାରେ।

ଶ୍ରୀମତୀ ବୋନାସିଏକ୍‌ସଙ୍କ ଚେତନା ଫେରିଆସିଲା। ସେ ଭୟରେ ଚାରିଆଡ଼କୁ ଚାହିଁ ଦେଖିଲେ ଯେ, ତାଙ୍କ ଉଦ୍ଧାରକର୍ତ୍ତାଙ୍କ ବ୍ୟତୀତ ସେଠାରେ ଆଉ କେହି ନାହାନ୍ତି। ସେ ଧୀରସ୍ୱରରେ କହିଲେ, ''ଆଃ, ଆପଣ ମୋତେ ରକ୍ଷା କରିଛନ୍ତି। ଆପଣଙ୍କୁ ଧନ୍ୟବାଦ ଅର୍ପଣ କରିବା ପାଇଁ ମୋର ଭାଷା ନାହିଁ।'' ଦାର୍‌ତାୟାଁ ତାଙ୍କୁ ରୁମାଲଖଣ୍ଡିକ ବଢ଼ାଇଦେଇ କହିଲା, ''ମୋତେ ଧନ୍ୟବାଦ ଦେବାର କିଛି କାରଣ ନାହିଁ। ମୁଁ ନ ହୋଇ ଯେକୌଣସି ଲୋକ ଏଠି ଥିଲେ ଏହାହିଁ କରିଥାନ୍ତା।''

ମାଡାମ୍ ବୋନାସିଏକ୍‌ସ ଦାର୍‌ତାୟାଁ ହାତରୁ ରୁମାଲଖଣ୍ଡିକ ଝାମ୍ପିନେଇ ନିଜର ପକେଟସ୍ଥ କଲେ। ସେ ମନକୁ ମନ ପଚାରିଲେ, ''ଏହି ଲୋକମାନେ କିଏ – ସେମାନେ ମୋ'ଠାରୁ ଚାହାଁନ୍ତି କ'ଣ? ସେମାନେ ଚୋର ଭଳି ତ ଜଣାଯାଉନାହାନ୍ତି! ମିଷ୍ଟର୍ ବୋନାସିଏକ୍‌ସ କୁଆଡ଼େ ଗଲେ?'' ଦାର୍‌ତାୟାଁ କହିଲା – ''ମହାଶୟ, ଏଇ ଲୋକମାନେ ଚୋରମାନଙ୍କ ଅପେକ୍ଷା ଅଧିକ ବଦ୍‌ମାସ। ସେମାନେ କାର୍ଡିନାଲ୍‌ଙ୍କ ପ୍ରତିନିଧି, ଆଉ ଆପଣଙ୍କ ସ୍ୱାମୀଙ୍କୁ ଗତକାଲି ବାସ୍‌ଟାଇଲ୍‌କୁ ନିଆଯାଇଛି।''

ସେ କାନ୍ଦ କାନ୍ଦ ହୋଇ କହିଲେ, ''ମୋ ସ୍ୱାମୀ! ବାସ୍‌ଟାଇଲ୍! ହେ ଭଗବାନ, ସେ ବା କ'ଣ କରିଛନ୍ତି? ସେ ତ ନିରୀହ।''

''ମୋର ବିଶ୍ୱାସ ତାଙ୍କ ଦୁର୍ଭାଗ୍ୟର କାରଣ ହେଉଛି, ସେ ଧନୀ ଏବଂ ସେ ଆପଣଙ୍କ ସ୍ୱାମୀ।''

''ତାହାହେଲେ ଆପଣ ସବୁ ଜାଣନ୍ତି—''

''ପଞ୍ଚଚାଳିଶ ବର୍ଷ ବୟସ୍କ ଜଣେ ବ୍ୟକ୍ତି ମୁଣ୍ଡରେ ତାଙ୍କର କୃଷ୍ଣ କେଶ, ତାଙ୍କ ଶରୀରର ବର୍ଣ୍ଣ କୃଷ୍ଣ ଓ ତାଙ୍କ ଗାଲରେ ଏକ କଟା ଦାଗ ଥିଲା—ଏହିପରି ଜଣେ ବ୍ୟକ୍ତି ଆପଣଙ୍କୁ ଶୂନ୍ୟେ ଶୂନ୍ୟେ ଟେକିନେଇ ଯାଇଥିଲେ ?''

''ମୋ ସ୍ୱାମୀ ଜାଣନ୍ତି କି ?''

ଦାର୍ତାୟାଁ ଉତ୍ତର ଦେଲା, ''ନିଶ୍ଚୟ। ସେ ତ ମୋତେ କହିଥିଲେ। ଆଉ ଆପଣ ଏତେ ଶୀଘ୍ର ମୁକ୍ତ ହେଲେ କିପରି ?''

ସୌଭାଗ୍ୟବଶତଃ କିଛି ସମୟ ପାଇଁ ମୋତେ କେହି ଜଗି ନଥିଲେ। ସେଦିନ ସକାଳୁ ମୁଁ ଜାଣିଥିଲି ଯେ, ମୁଁ କାହିଁକି ଅପହୃତା ହୋଇଛି। ତେଣୁ ସାମାନ୍ୟ ସୁଯୋଗ ପାଇ ଖସିଆସିଲି। ତାହାପରେ ମୁଁ ଏଠାକୁ ଅତି ଶୀଘ୍ର ପଳାଇଆସିଲି; କାରଣ ଏଠାରେ ମୁଁ ମୋର ସ୍ୱାମୀଙ୍କୁ ପାଇବି।''

ଦାର୍ତାୟାଁ ଟିକିଏ ହସି କହିଲା, ''ଓ, ତାଙ୍କର ବଳିଷ୍ଠ ବାହୁଦ୍ୱୟତଳେ ଆପଣ ଆଶ୍ରୟ ନେଇଥାଆନ୍ତେ ?''

''ନା-ନା, ସେହି ଦୁର୍ବଳ ହତଭାଗା ବ୍ୟକ୍ତି ମୋତେ କଦାପି ରକ୍ଷା କରିପାରି ନଥାନ୍ତେ; କିନ୍ତୁ ଅନ୍ୟ ଭାବରେ ସେ ସାହାଯ୍ୟ କରିଥାନ୍ତେ।''

''କିଏ ?''

ମାଡାମ୍ ବୋନାସିଏକ୍ସ ନୀରବ ରହିଲେ। ଦାର୍ତାୟାଁ କହିଲା—''ସେସବୁ ଯାହାହେଉ, ଆମେ ଏଠାରେ ଅଧିକ ସମୟ ରହିବା ନାହିଁ। ଯେଉଁ ଲୋକମାନଙ୍କୁ ଏଠାରୁ ତଡ଼ିଦିଆଗଲା, ସେମାନେ ହୁଏତ ଅଧିକ ଶକ୍ତି ସଂଗ୍ରହ କରି ଏଠାକୁ ଫେରିବେ। ସେତେବେଳେ ଆମମାନଙ୍କ ଅବସ୍ଥା ଖରାପ ହେବ।'' ସେ ଭୟାତୁର କଣ୍ଠରେ ଚିତ୍କାର କରିଉଠିଲେ, ''ନିଶ୍ଚୟ ନିଶ୍ଚୟ! ଆପଣ ଠିକ୍ କହୁଛନ୍ତି; କିନ୍ତୁ ଆମେ ଯିବା କୁଆଡ଼େ ?''

''ଆଗେ ଏ ସ୍ଥାନ ଛାଡ଼ିବା; ତା'ପରେ ଦେଖିବା କୁଆଡ଼େ ଯିବା।''

ଘରୁ ବାହାରି କେତେଟା ଗଳି ପାରହୋଇ ଯିବା ପରେ ଦାର୍ତାୟାଁ କହିଲା, ''ବର୍ତ୍ତମାନ ଆପଣଙ୍କୁ କେଉଁ ସ୍ଥାନକୁ ନେବି ମୋତେ ନିର୍ଦ୍ଦେଶ ଦିଅନ୍ତୁ।'' ଶ୍ରୀମତୀ ବୋନାସିଏକ୍ସ ଉତ୍ତର ଦେଲେ, ''ମୁଁ ପ୍ରକୃତରେ ଜାଣେ ନାହିଁ। ମୋର ଉଦ୍ଦେଶ୍ୟ ଥିଲା, ମୁଁ ମୋର ସ୍ୱାମୀଙ୍କୁ ଲାପୋର୍ଟଙ୍କ ପାଖକୁ ପଠାଇଥାନ୍ତି। ଗତ ତିନିଦିନ ମଧ୍ୟରେ ଲୋଭର୍‌ଠାରେ କ'ଣ କ'ଣ ସବୁ ଘଟିଛି ଓ ମୁଁ ଯଦି ମୋର କର୍ତ୍ତବ୍ୟ କରିଯିବି, ତାହାହେଲେ କିଛି ଅସୁବିଧା ହେବ କି ନାହିଁ— ସେ ଏସବୁ କଥା ବୁଝିଆସିଥାନ୍ତେ।''

"ମୁଁ ଆପଣଙ୍କ ପାଇଁ ଲାପୋର୍ଟଙ୍କ ପାଖରୁ ଖବର ମଧ୍ୟ ନେଇପାରନ୍ତି।"

"ନିଃସନ୍ଦେହରେ; କିନ୍ତୁ ଗୋଟିଏ ଅସୁବିଧା ଅଛି। ପରିଚାରକମାନଙ୍କ ଗୃହକୁ ପଡ଼ିଥିବା ରାସ୍ତାର ଦ୍ୱାର ନିକଟରେ ଥିବା ଦରୱାନ୍ ଆପଣଙ୍କୁ ଚିହ୍ନେ ନାହିଁ; ତେଣୁ ସେ ଆପଣଙ୍କୁ ଭିତରକୁ ଛାଡ଼ିବ ନାହିଁ।"

"ସେହି ଦ୍ୱାରଦେଇ ଯିବାପାଇଁ କୌଣସି ସଙ୍କେତ ଅବଶ୍ୟ ଥିବ।"

ସେ ଦାର୍ତାୟାଁଙ୍କୁ ଅତି ବିଶ୍ୱାସର ସହିତ ଚାହିଁ କହିଲେ, "ମୁଁ ଯଦି ଆପଣଙ୍କୁ ସେହି ସଙ୍କେତଟି କହିଦିଏ, ଆପଣ କ'ଣ ତାହାର ବ୍ୟବହାର ପରେ ପରେ ତାହା ଭୁଲିଯିବେ ?"

ଦାର୍ତାୟାଁ କହିଲା, "ମୁଁ ଜଣେ ଭଦ୍ରଲୋକ ହିସାବରେ ଶପଥ କରି କହୁଛି, ତାହା ମୁଁ ନିଶ୍ଚୟ କରିବି।" ସେ କହିଲେ, "ମୁଁ ଆପଣଙ୍କୁ ବିଶ୍ୱାସ କରୁଛି। ତେବେ ଆପଣ ଫେରିବା ପର୍ଯ୍ୟନ୍ତ ମୁଁ ଯିବି କୁଆଡ଼େ ?"

"ଏପରି କାହାର ଘର ଅଛି, ଯେଉଁଠାରେ କି ଏମ୍. ଲାପୋର୍ଟଙ୍କ ସହିତ ଆପଣଙ୍କର ସାକ୍ଷାତ୍ ହୋଇପାରିବ ?"

"ନା, ମୁଁ କାହାରିକୁ ବିଶ୍ୱାସ କରିପାରିବି ନାହିଁ।"

ଦାର୍ତାୟାଁ କହିଲା, "ଏହି ନିକଟରେ ମୋର ବନ୍ଧୁ ଆଥସ୍ ବାସକରନ୍ତି। ପରସ୍ପରର ବସା ଚାବିକାଠି ଆମେ ଆମ ପାଖରେ ରଖିଥାଉଁ। ସେ ଆଜି ରାତିରେ ଖାଇବାକୁ ବାହାରକୁ ଯାଇଛନ୍ତି। ଲାପୋର୍ଟ ଆସିବା ପର୍ଯ୍ୟନ୍ତ ଆପଣ ସେଠାରେ ନିରାପଦରେ ରହିପାରନ୍ତି।"

ତାଙ୍କ ସମ୍ମତିକୁ ଅପେକ୍ଷା ନକରି ଦାର୍ତାୟାଁ ତାଙ୍କ ବାହୁ ଧରି ଆଥସ୍‌ଙ୍କ ଦ୍ୱିତୀୟ ମହଲାରେ ଥିବା ଗୋଟିଏ ଛୋଟ କୋଠରିକୁ ତାଙ୍କୁ ନେଇଗଲା। ସେ କହିଲା, "ଆପଣ ଏହିଠାରେ ଥାଆନ୍ତୁ, ଏହିପରି ତିନିଥର ଶବ୍ଦ ଶୁଣିଲେ କବାଟ ଖୋଲିବେ, ଅନ୍ୟଥା ନୁହେଁ।" ସେ କବାଟରେ ତିନିଥର ଟିପ ମାରିଲା – ଦୁଇଥର ଲାଗି ଲାଗି ଓ ତୃତୀୟ ଥର ଟିକିଏ ଛାଡ଼ି।

ମାଡାମ୍ ବୋନାସିଏକ୍ସ କହିଲେ, "ଆପଣଙ୍କୁ ଧନ୍ୟବାଦ। ବର୍ତ୍ତମାନ ଆପଣଙ୍କୁ କ'ଣ କରିବାକୁ ହେବ, ମୁଁ କହିବି। ଆପଣ ଲୋଭର୍ ପ୍ରାସାଦର ଗୋଟିଏ କଡ଼କୁ ଥିବା ଦରଜା ପାଖକୁ ଯାଆନ୍ତୁ ଏବଂ ଜର୍ମେନ୍‌କୁ ତଲାସନ୍ତୁ।"

"ତା'ପରେ ?"

"ଆପଣ କ'ଣ ଚାହାନ୍ତି ବୋଲି ସେ ଆପଣଙ୍କୁ ପଚାରିଲେ, ଆପଣ 'ଟୁଉରସ୍ ଓ ବ୍ରୁକ୍‌ସେଲ୍ସ' ଏହି ଦୁଇଟି ପଦ କହିବେ। ତାହାପରେ ଆପଣ ଯାହା କହିବେ, ସେ ତାହା କରିବ।"

"ତା'ପରେ ମୁଁ ତାକୁ କ'ଣ କହିବି ?"

"ରାଣୀଙ୍କର ବ୍ୟକ୍ତିଗତ ପରିଚାରକ ଏମ୍. ଲାପୋର୍ଟଙ୍କୁ ଡାକିଆଣିବା ପାଇଁ ତାଙ୍କୁ କହିବେ।"

ଗୋଟିଏ ଅତି ସୂକ୍ଷ୍ମ ସରଳ ପ୍ରଶ୍ନ ପଚାରି ତାଙ୍କଠାରୁ ଆଉ ଅଧିକ କିଛି ପାଇବା ଆଶାରେ ଦାର୍ତାୟାଁ ପୁଣି ପଚାରିଲା, "ଆଚ୍ଛା, ଲାପୋର୍ଟଙ୍କୁ ମୁଁ କଣ କହିବି ?" ସେ ଟିକିଏ ହସି କହିଲେ, "ନା, ସେମିତି କିଛି ନୁହେଁ। ମୁହୂର୍ତ୍ତେ ମାତ୍ର କାଳବିଳମ୍ବ ନ କରି ମୋ ପାଖକୁ ଆସିବାକୁ ତାଙ୍କ କହନ୍ତୁ। ଆଉ ଅନୁଗ୍ରହ କରି ଆପଣ ତାଙ୍କ ସହିତ ଆସିବେ ନାହିଁ।"

ଦାର୍ତାୟାଁ ଲୋଭର୍ ପ୍ରାସାଦକୁ ବାହାରିଲା ଓ ମାଡାମ୍ ବୋନାସିଏକ୍ସ କବାଟ ଭିତରପଟୁ କିଳିଦେଲେ। ଦାର୍ତାୟାଁ ଲୋଭର୍ ରାଜପ୍ରାସାଦର ଛୋଟ ଦରଜାଟି ପାଖରେ ଅଳ୍ପ କେତେ ମିନିଟ୍ ମଧ୍ୟରେ ପହଞ୍ଚିଲା। ଜର୍ମେନ୍ ଯେମିତି ଗୁପ୍ତ ସଙ୍କେତଟି ଶୁଣିଛି, ସେ ସଙ୍ଗେ ସଙ୍ଗେ ଲାପୋର୍ଟଙ୍କ ପାଖକୁ ଖବର ପଠାଇଲା। ଯାହା ଯାହା ଘଟିଥିଲା ଦାର୍ତାୟାଁ ଲାପୋର୍ଟଙ୍କ ଆଗରେ ସବୁ କିଛି ସଂକ୍ଷେପରେ ବର୍ଣ୍ଣନା କଲା। ତା'ପରେ ମାଡାମ୍ ବୋନାସିଏକ୍ସ ଯେଉଁଠାରେ ଅପେକ୍ଷା କରିଛନ୍ତି ଓ ଦରଜାରେ କିପରି ସଙ୍କେତ ଦେବାକୁ ହେବ ସେକଥା ତାଙ୍କୁ ବୁଝାଇଦେଲା। ଲାପୋର୍ଟ ଏହି ଠିକଣାଟିକୁ ମନେ ରଖିବା ପାଇଁ ବାରମ୍ବାର ଆବୃତ୍ତି କରୁ କରୁ ରାସ୍ତା ଉପରକୁ ବାହାରିପଡ଼ିଲେ। ମାତ୍ର ସେତିକିବେଳକୁ ଘଣ୍ଟାରେ ଢଂ ଢଂ କରି ଦଶଟା ବାଜିଲା। ସେ ଟିକିଏ ରହିଗଲେ ଓ ଦାର୍ତାୟାଁ ବାହୁ ଉପରେ ନିଜର ହାତ ରଖି କହିଲେ, "ଯୁବକ, ତୁମେ ସାବଧାନ ହୁଅ। କାରଣ ତୁମେ ଏ ଯେଉଁ କାମରେ ହାତ ଦେଇଛ, ସେଥିପାଇଁ ତୁମେ ଅସୁବିଧାରେ ପଡ଼ିପାର।"

"ଆପଣ କ'ଣ ପ୍ରକୃତରେ ଏହା ଭାବୁଛନ୍ତି ?"

"ମୁଁ ଏହା ନିଶ୍ଚିତ କରି କହିପାରେ। ତୁମର ଏପରି କୌଣସି ବନ୍ଧୁ ଅଛନ୍ତି, ଯାହାଙ୍କର ଘଡ଼ି ଟିକିଏ ବିଳମ୍ବରେ ଚାଲେ ?"

"ଆପଣ ଏ କ'ଣ କହୁଛନ୍ତି ?"

"ମୋର କହିବାର କଥା, ଆପଣ ତାଙ୍କ ସହିତ ସଙ୍ଗେ ସଙ୍ଗେ ଦେଖାକରନ୍ତୁ, ତାହାହେଲେ ସେ ସାକ୍ଷ୍ୟ ଦେଇପାରିବେ ଯେ, ଆପଣ ତାଙ୍କ ସହିତ ସାଢ଼େ ୯ଟା ସମୟରେ ଥିଲେ।"

ଦାର୍ତାୟାଁଙ୍କୁ ଏହା ଖୁବ୍ ଯୁକ୍ତିଯୁକ୍ତ ମନେହେଲା। ସେ ସଙ୍ଗେ ସଙ୍ଗେ ଦୌଡ଼ି ଚାଲିଲା ଏବଂ ଅଳ୍ପ କେତେକ ସମୟ ପରେ ଟ୍ରିଭିଲ୍‌ଙ୍କ ଗୃହରେ

ଉପସ୍ଥିତ ହେଲା । ସେ ଅଭ୍ୟର୍ଥନା ଗୃହରେ ପ୍ରଥମେ ପ୍ରବେଶ କଲା । ପରିଚାରକ ସଙ୍ଗେ ସଙ୍ଗେ ଯାଇ ଟ୍ରିଭିଲ୍‌ଙ୍କୁ ଖବର ଦେଲା ଯେ, ଦାର୍‌ତାୟାଁ ଅଳ୍ପ ସମୟ ପାଇଁ ତାଙ୍କ ସହିତ ଦେଖାକରିବାକୁ ଇଚ୍ଛା କରନ୍ତି ଏବଂ ତାଙ୍କୁ କିଛି ଜରୁରୀ ସମ୍ବାଦ ମଧ୍ୟ ଦେବେ । ଉକ୍ତ ପରିଚାରକ ଅଭ୍ୟର୍ଥନା କୋଠରି ଯେମିତି ଛାଡ଼ିଛି, ଦାର୍‌ତାୟାଁ ଗୋଟିଏ ପ୍ଲାଟ୍‌ଫର୍ମ ଉପରକୁ ଉଠିଯାଇ ତା' ଉପରେ ଥିବା ଗୋଟିଏ ବିରାଟ ସୁନେଲି ରଙ୍ଗର ଘଡ଼ିର କାଚଢ଼ାଙ୍କୁଣି ଖୋଲି ୯ ଘଣ୍ଟା ୨୫ ମିନିଟ୍‌ରେ ଘଣ୍ଟାକୁ ଠିକ୍ କରିନେଲା । କିଛି ସମୟ ପରେ ଟ୍ରିଭିଲ୍ ସେଠାରେ ପ୍ରବେଶ କରିବାରୁ ଦାର୍‌ତାୟାଁ ତାଙ୍କୁ କହିଲା, "ମୁଁ ଏମିତି ଅସମୟରେ ଆପଣଙ୍କୁ ସାକ୍ଷାତ୍ କରିବାକୁ ଆସିଲି– ମୋର ତ୍ରୁଟି ମାର୍ଜନା କରିବେ । ମୁଁ ଭାବୁଛି, ବର୍ତ୍ତମାନ ଯେତେବେଳେ ଘଡ଼ିରେ ଏପର୍ଯ୍ୟନ୍ତ ୯-୩୦ ବି ହୋଇନାହିଁ, ଆପଣଙ୍କ ସହ ସାକ୍ଷାତ୍ କରିବାଟା ବିଶେଷ କିଛି ଅସଙ୍ଗତ ମନେ ହେବ ନାହିଁ ।"

ଟ୍ରିଭିଲ୍ ଆଶ୍ଚର୍ଯ୍ୟ ହୋଇ ଘଡ଼ି ଆଡ଼କୁ ଚାହିଁଲେ ଏବଂ କହିଲେ, "ଏପର୍ଯ୍ୟନ୍ତ ସାଢ଼େ ନଅଟା ହୋଇନାହିଁ ! ମୁଁ ଭାବୁଛି, ବର୍ତ୍ତମାନ ତା ଅପେକ୍ଷା ଅଧିକ ସମୟ ହୋଇଥିବ । ମୋର କେତେକ ବନ୍ଧୁ ଅଛନ୍ତି, ତଥାପି ତୁମ ପାଇଁ ମୁଁ ସମୟ ଦେଇପାରିବି ।"

ଦାର୍‌ତାୟାଁ ତା'ପରେ ରାଣୀଙ୍କ ଉପରେ ଥିବା ବିପଦ ଆଶଙ୍କା ବିଷୟରେ ଏକ ଦୀର୍ଘ ବିବରଣୀ ପ୍ରଦାନ କଲା । ତାଙ୍କୁ ଧରିବା ପାଇଁ କାର୍ଡିନାଲ୍‌ଙ୍କର ବକିଂହାମ୍ ଡ୍ୟୁକ୍‌ଙ୍କ ପାଖକୁ ମିଥ୍ୟାପତ୍ର ପଠାଇବା ବିଷୟ ମଧ୍ୟ କହିଲା । ମାଡାମ୍ ବୋନାସିଏକ୍ସଙ୍କ ପ୍ରତି ଯାହା ଯାହା ଘଟିଥିଲା, ତାହାର ଟିକିନିଖି ବିବରଣୀ ମଧ୍ୟ ପ୍ରଦାନ କଲା । ଏସବୁ ବିଷୟ ମଧ୍ୟ ଟ୍ରିଭିଲ୍‌ଙ୍କୁ କିଛି ଅସଙ୍ଗତ ମନେ ହୋଇ ନଥିଲା; କାରଣ ସେସବୁ ବିଷୟରେ ସେ କିଛି କିଛି ଆଭାସ ପାଇଥିଲେ । ପ୍ଲାଟ୍‌ଫର୍ମ ଉପରେ ଥିବା ଘଡ଼ିରେ ଦଶଟା ବାଜିବା ପରେ ପରେ ଦାର୍‌ତାୟାଁ ତାଙ୍କର ଏତେ ସମୟ ନଷ୍ଟ କରିଥିବାରୁ କ୍ଷମା ପ୍ରାର୍ଥନା କରି ତାଙ୍କଠାରୁ ବିଦାୟ ନେଲା । ସେ ଏହି ଖବର ଦେଇଥିବା ଯୋଗୁଁ ଟ୍ରିଭିଲ୍ ତାକୁ ଧନ୍ୟବାଦ ଜ୍ଞାପନ କରିଥିଲେ ଏବଂ ରାଣୀଙ୍କ ପ୍ରତି ଅନୁରକ୍ତି ପ୍ରକାଶ କରିଥିବାରୁ ବଧେଇ ଜଣାଇଥିଲେ । ତା'ପରେ ବୈଠକ ଗୃହରେ ଥିବା ତାଙ୍କ ବନ୍ଧୁମାନଙ୍କ ପାଖକୁ ସେ ଯଥାଶୀଘ୍ର ଫେରିଯାଇଥିଲେ ।

ଦାର୍‌ତାୟାଁ ଶିଢ଼ିରେ ତଳକୁ ଧୀରେ ଧୀରେ ଓହ୍ଲାଇ ଆସିଲା; କିନ୍ତୁ ତଳକୁ ଆସି ତା'ର ବେତବାଡ଼ିଟି ଛାଡ଼ିଆସିଥିବାର ବିରକ୍ତିକର ମନୋଭାବ

ପ୍ରକାଶର ଛଳନା କରି ସେ ଶିଡ଼ିଦେଇ ପୁଣି ସେହି ଗୃହରେ ପ୍ରବେଶ କଲା ଏବଂ ମୁହୂର୍ତ୍ତକ ମଧରେ ଘଡ଼ିର କଣ୍ଟା ଠିକ୍ ସ୍ଥାନରେ ରଖିଦେଲା। ଜାଣି ଜାଣି ତାର ବେତବାଡ଼ିଖଣ୍ଡିକ ଯେଉଁଠାରେ ରଖି ଆସିଥିଲା, ସେଠାରୁ ତାହା ଆଣି ଘର ବାହାରକୁ ଚାଲିଆସିଲା। ଏହିପରି ଟ୍ରିଭିଲ୍‌ଙ୍କ ଭଳି ଜଣେ ବିଶିଷ୍ଟ ବ୍ୟକ୍ତିଙ୍କୁ ସାକ୍ଷୀରୂପେ ଠିକ୍ କରିନେଇ ଦାଗ୍‌ତାଯାଁ ବେଶ୍ ସନ୍ତୋଷ ଲାଭକଲା। ତା'ର ଏ ସାକ୍ଷୀଙ୍କୁ କେହି ହେଲେ ସନ୍ଦେହ କରିବାକୁ ସାହସ କରିବେ ନାହିଁ।

## ଚକ୍ରାନ୍ତ ଜଟିଳ ହେଲା

ରାତିଟି ବେଶ୍ ଚମତ୍କାର ଥିଲା। ଦାଗ୍‌ତାଯାଁ ଟ୍ରିଭିଲ୍‌ଙ୍କ ଗୃହ ଛାଡ଼ି ସାଧାରଣ ଉଦ୍ୟାନ ବାଟ ଦେଇ ଫେରିବାକୁ ମନସ୍ଥ କଲା। ଗତ କେତେ ଦିନର ଘଟଣାବଳୀ ଭାବି ଭାବି ସେ ରାସ୍ତାରେ ଚାଲିଥାଏ। ଅନ୍ୟ କୌଣସି କଥାକୁ ତା'ର ଖିଆଲ ନଥାଏ। ହଠାତ୍ ସେ ଝୁଣ୍ଟିପଡ଼ିବାରୁ ତାର ଚେତନା ଫେରିଆସିଲା ଓ ସେ ବୁଝିଲା ଯେ, ସେ ଅନେକ ବାଟ ବୁଲି ଆସିଲାଣି। ଆରାମିସ୍ ରହୁଥିବା ଅଞ୍ଚଳରେ ସେ ବୁଲି ବୁଲି ଆସି ପହଞ୍ଚିଛି। ଆସିଗଲାଣି ଯେତେବେଳେ ତାଙ୍କ ସହ ଦେଖାକରି ଯାହା ଯାହା ସବୁ ଘଟିଥିଲା, ସେ ସମସ୍ତ ତାଙ୍କୁ ଜଣାଇବା ପାଇଁ ସେ ମନସ୍ଥ କଲା।

ସେତିକିବେଳେ ଘଣ୍ଟାରେ ୧୧ଟା ବାଜିଲା। ଆରାମିସ୍‌ଙ୍କ ଘରକୁ ପଡ଼ିଥିବା ରାସ୍ତାଟିର ଦୁଇପାଖରେ ଥିଲା ଦୁଇଧାଡ଼ି ଗଛ ଓ ରାସ୍ତାଟି ଥିଲା ନୀରବ ଓ ଶାନ୍ତ। ଆରାମିସ୍‌ଙ୍କ ଘର ଅନ୍ଧାର ଦେଖି ସେ ଜାଣିଲା ଯେ, ଆରାମିସ୍ ନାହାନ୍ତି। ଦାଗ୍‌ତାଯାଁ ଗୋଟାଏ ଗଛର ଗଣ୍ଡିକୁ ଆଉଜି କିଛି ସମୟ ଅପେକ୍ଷା କଲା। ସେହି ଗଛଟି ଥିଲା ତାର ବନ୍ଧୁଙ୍କ ଗୃହ ସାମନାରେ– ଏକ ବିରାଟ ସିକାମୋର ଗଛ। ସେ ଠିକ୍ ଚାଲିଯିବାକୁ ବସିଛି, ଅଳ୍ପ ଦୂରରେ ଏକ ଛାୟାମୂର୍ତ୍ତି ଦେଖିବାକୁ ପାଇଲା। ଏହି ମୂର୍ତ୍ତିଟି କ୍ରମେ ତାର ନିକଟବର୍ତ୍ତୀ ହେଉଥିଲା। ଛାୟାମୂର୍ତ୍ତିଟି ଗୋଟିଏ ଓଭରକୋଟ ଓ ମୁଣ୍ଡ ଉପରେ ଏକ ଟୋପି ପିନ୍ଧିଥିଲା। ତାହାର ଚାଲିରୁ ସେ ବୁଝିଗଲା ଯେ, ଏହା ଏକ ନାରୀମୂର୍ତ୍ତି। ଏହି ନାରୀର ଢଙ୍ଗଢାଙ୍ଗରୁ ଜଣାଯାଉଥିଲା, ସେ ଯେପରି ନିଜକୁ ଲୁଚାଇରଖିବାକୁ ବିଶେଷଭାବରେ ସତର୍କ ଥିଲା; କାରଣ ପ୍ରତ୍ୟେକ

ଗଛଠାରୁ ଅନ୍ୟ ଗଛ ପାଖକୁ ସତର୍କତା ସହିତ ଆସି ନିଜକୁ ବୃକ୍ଷର ଛାୟାରେ ମୁହୂର୍ତ୍ତକ ପାଇଁ ଲୁଚାଇରଖୁଥିଲା ଏବଂ ଚାରିଆଡ଼କୁ ଥରେ ଚାହୁଁଥିଲା। ଦାର୍‌ତାୟାଁ ବୃକ୍ଷ ଆଢୁଆଳରେ ଲୁଚି ରହି ନାରୀମୂର୍ତ୍ତିକୁ ଲକ୍ଷ୍ୟ କରୁଥାଏ। ହଠାତ୍ ସେ କଣ କରିବ କିଛି ଠିକ୍ କରିପାରିଲା ନାହିଁ। ତେବେ ନାରୀଟି ଯେ ଗୂଢ଼ ଉଦ୍ଦେଶ୍ୟ ନେଇ ଆସିଛି, ଏ ବିଷୟରେ ସେ ନିଶ୍ଚିତ ହେଲା।

ନାରୀଜଣକ ରାସ୍ତାଉପରକୁ ଧୀର ପଦକ୍ଷେପରେ ଆସିଲା; କିନ୍ତୁ ପ୍ରତି ମୁହୂର୍ତ୍ତରେ ଯେପରି ଆଶଙ୍କିତ ହେଉଥାଏ ଏବଂ ଜଣାଯାଉଥାଏ ଯେପରି ଘରଗୁଡ଼ିକ ଗଣୁଥାଏ। ସେ ଯେତେବେଳେ ଆରାମିସ୍‌ଙ୍କ ଗୃହ ସମ୍ମୁଖସ୍ଥ ବୃକ୍ଷ ପାଖକୁ ଆସିଲା, ସେଠି କିଛି ସମୟ ରହି ଧୀରେ ଥରେ କାଶିଲା। ତା'ପରେ ସେ ବନ୍ଦ ହୋଇଥିବା ଝରକା ନିକଟକୁ ଗଲା ଓ ସେଠାରେ ସମବ୍ୟବଧାନରେ ତିନିଥର ଟିପ ମାରିଲା। ତାର ଅଳ୍ପ କେତେ ମୁହୂର୍ତ୍ତ ପରେ ଝରକାର କବାଟ ଅଳ୍ପ ଖୋଲିଗଲା।

ଏତେବେଳକୁ ଦାର୍‌ତାୟାଁର କାନ ଓ ଆଖି ସତର୍କ ହୋଇ ଉଠିଥାଏ। ସ୍ତ୍ରୀଲୋକଟିର ଚାଲିଚଳଣ ଉଇଁଆସୁଥିବା ଚନ୍ଦ୍ରର କ୍ଷୀଣ ଆଲୋକରେ ସେ ଦେଖିପାରୁଥାଏ। ସେ ଦେଖିଲା ଯେ, ଉକ୍ତ ନାରୀ ନିଜ ପକେଟରୁ ଏକ ରୁମାଲ ବାହାର କଲା। ସେ ତାହା ଖୋଲି ତାହାର ଗୋଟିଏ କୋଣ ଘର ଭିତରେ ଥିବା କୌଣସି ବ୍ୟକ୍ତିକୁ ଦେଖାଇଲା। ମାଦାମ୍ ବୋନାସିଏକ୍ସ ଯେଉଁ ରୁମାଲଖଣ୍ଡିକ ଲୁଚାଇବା ପାଇଁ ଏତେ ଯତ୍ନ କରୁଥିଲେ, ତାହା ସେହି ରୁମାଲ ବୋଲି ଦାର୍‌ତାୟାଁର ମନେହେଲା। ଆଉ ଟିକିଏ ଭଲ ଭାବରେ ଦେଖିବା ପାଇଁ ଓ ସେମାନଙ୍କ କଥା ଶୁଣିବା ପାଇଁ ସେ ଛପି ଛପି କିଛି ବାଟ ପାଖେଇ ଆସିଲା। ଅବଶ୍ୟ ଅତି ଧୀରକଣ୍ଠରେ ଆବାଜ ମାତ୍ର ସେ ଶୁଣିଲା; କିନ୍ତୁ ଏକଥା ନିଶ୍ଚିତ ଭାବରେ ସେ ସ୍ଥିର କଲା ଯେ, ଭିତରର ବ୍ୟକ୍ତି ନିଶ୍ଚୟ ଜଣେ ନାରୀ। ଘର ଭିତରର ନାରୀ ଗୋଟିଏ ରୁମାଲ ବଢ଼ାଇଦେଲା ଏବଂ ପ୍ରତିବଦଳରେ ତାକୁ ଦେଖାହୋଇଥିବା ରୁମାଲଖଣ୍ଡିକ ନେଇଗଲା।

ବାହାରେ ଥିବା ସ୍ତ୍ରୀଲୋକଜଣକ ଚାଲିଯିବାକୁ ପ୍ରସ୍ତୁତ ହୋଇ ମୁଣ୍ଡରେ ଘୋଡ଼ଣିଟି ଟାଣିଦେବା ପୂର୍ବରୁ ଦାର୍‌ତାୟାଁ ତା'ର ମୁଖମଣ୍ଡଳଟି ଦେଖି ଚମକି ଉଠିଲା। ସେ ଯେ ମାଦାମ୍ ବୋନାସିଏକ୍ସ! ସ୍ତ୍ରୀଲୋକଟି ସେଠାରେ ଅନ୍ୟ ଜଣେ ବ୍ୟକ୍ତିର ଉପସ୍ଥିତି ଜାଣିପାରି ସେଠାରୁ ଦୌଡ଼ି ଚାଲିଗଲା। ଦାର୍‌ତାୟାଁ ନିଜକୁ ନିଜେ କହିଲା, ''ହେ ଭଗବାନ୍, ଏହା ନିଶ୍ଚୟ ଏକ

ଗୁରୁତର କଥା। ଘଣ୍ଟାକରୁ କମ୍ ସମୟ ପୂର୍ବେ ଏହି ସ୍ତ୍ରୀଜଣକ ଶତ୍ରୁଭୟରେ ଥରୁଥିଲା; ଅଥଚ ବର୍ତ୍ତମାନ ପାରିସ୍ ନଗରୀର ଗଳିକନ୍ଦିରେ ଘୁରିବୁଲୁଛି ବିପଦ ବରଣ କରି।''

ଦାର୍ତାୟାଁ ନାରୀଟି ପଛେ ପଛେ ଧାଇଁଲା ଓ ଅଳ୍ପ କେତେ ସମୟ ପରେ ତାକୁ ଧରିପକାଇଲା। ସ୍ତ୍ରୀଲୋକଟି ଦେଖିଲା ଯେ, ଖସିପଳାଇବାର ଆଉ କୌଣସି ଉପାୟ ନାହିଁ। ତେଣୁ ସେ ଭୟରେ ଆଣ୍ଠେଇ ପଡ଼ି ରୁଦ୍ଧଗଳାରେ କହିଲା, ''ମୋତେ ହତ୍ୟାକର; କିନ୍ତୁ ମୁଁ କିଛି ହେଲେ କହିବି ନାହିଁ।'' ଦାର୍ତାୟାଁ ତ୍ରସ୍ତ ଓ ଅର୍ଦ୍ଧ-ଚେତନାଶୂନ୍ୟ ରମଣୀଙ୍କୁ ଉଠାଇଲା ଏବଂ ଅତି ଧୀର ଓ ଶାନ୍ତଗଳାରେ ଭୟ ନକରିବାକୁ କହିଲା। ରମଣୀ ପ୍ରଥମେ ଜାଣିପାରିଲେ ନାହିଁ ଯେ ସେ କିଏ। ଦାର୍ତାୟାଁ ନିଜର ନାମ ପ୍ରକାଶ କରିବାରୁ ସେ ଜାଣିଲେ। ସେ ରୁଦ୍ଧଗଳାରେ କହିଲେ – ''ଆପଣ, ଓଃ, ଭଗବାନଙ୍କୁ ଧନ୍ୟବାଦ।'' ଦାର୍ତାୟାଁ କହିଲା, ''ମୁଁ ଭାବୁଛି, ମୁଁ ଆପଣଙ୍କୁ ଜଗିବାପାଇଁ ଯେମିତି ପଠାହୋଇଛି।'' ରମଣୀ କହିଲେ, ''ତାହାହେଲେ ସେହି ଉଦ୍ଦେଶ୍ୟରେ ଆପଣ ମୋ ପିଛା ଧରିଥିଲେ।'' ଦାର୍ତାୟାଁ ଉତ୍ତର ଦେଲା, ''ନା, ସେ ବିଷୟରେ ଆପଣ ନିଶ୍ଚିତ ହୋଇପାରନ୍ତି। ଝରକା ପାଖରେ ମୁଁ ଆପଣଙ୍କୁ ହଠାତ୍ ଦେଖିପାରିଲି। ଆପଣ ବେଶ୍ ରହସ୍ୟମୟୀ।''

''ଏହାଦ୍ୱାରା ମୋର କିଛି କଣ ଅସୁବିଧା ହେଉଛି।''

''ନା, ନା, ବରଂ –''

''ତାହାହେଲେ ଆପଣଙ୍କ ହାତ ଧରିବାପାଇଁ ମୋତେ ଅନୁମତି ଦିଅନ୍ତୁ।''

''ଖୁସିରେ, ଏହି ବର୍ତ୍ତମାନ।''

''ଆପଣ ମୋ ସାଙ୍ଗରେ ଯିବେ।''

''କେଉଁଠାକୁ ?''

''ଆପଣ ନିଜେହିଁ ଜାଣିବେ; କାରଣ ଦରଜା ପାଖରେ ଆପଣ ମୋତେ ଛାଡ଼ିବେ; କିନ୍ତୁ ମୋ ପାଇଁ ସେଠାରେ ଅପେକ୍ଷା କରିବେ ନାହିଁ।''

ଦାର୍ତାୟାଁ ଏ ପ୍ରସ୍ତାବରେହିଁ ରଜିଲା ଓ ଏହା ପରେ ଦୁହେଁ ଦ୍ରୁତ ପଦକ୍ଷେପରେ ଚାଲିଲେ। ର୍ୟୁ. ଡ଼ି. ଲା. ହାର୍ପର ଅଧାବାଟରେ ଶ୍ରୀମତୀ ବୋନାସିଏକ୍ସ ଟିକିଏ ରହିଗଲେ, ତା'ପରେ ୭୫ ନମ୍ବରଠାରେ ଠିଆହେଲେ। ସେ କହିଲେ, ''ଏହିଠାରେ ମୁଁ ଆପଣଙ୍କଠାରୁ ବିଦାୟ ନେବି। ଆପଣ ମୋ ସହିତ ଆସିଥିବାରୁ ଆପଣଙ୍କୁ ଶତ ଶତ ଧନ୍ୟବାଦ। ଆପଣ ବର୍ତ୍ତମାନ

ଯାଇପାରନ୍ତି। ବର୍ତ୍ତମାନ ପ୍ରାୟ ନିଶାର୍ଦ୍ଧ ଏବଂ ଠିକ୍ ଏହି ସମୟରେ ମୋର ଆସିବାର କଥା।''

ଦାର୍ତାୟାଁ ତାଙ୍କଠାରୁ ବିଦାୟ ନେଇ ସଙ୍ଗେ ସଙ୍ଗେ ସେ ସ୍ଥାନ ଛାଡ଼ି ଚାଲିଗଲା। ମାଡାମ୍ ବୋନାସିଏକ୍ସ ଦରଜା ଉପରେ ତିନିଗୋଟି ପରିଷ୍କାର ଶବ୍ଦ କଲେ। ଦାର୍ତାୟାଁ ମୁହୂର୍ତ୍ତକ ପାଇଁ ପଛକୁ ଚାହିଁ ଦେଖିଲା ଯେ, ଦରଜାଟି ଖୋଲିଗଲା ଓ ପୁନର୍ବାର ବନ୍ଦ ହେଲା। ଏହାପରେ ସେ ଚାଲିଗଲା।

## ମଧ୍ୟରାତ୍ରରେ ସାକ୍ଷାତ୍

ଦାର୍ତାୟାଁ ଚାଲିବାକୁ ଲାଗିଲା। ସେ କଥା ଦେଇଥିଲା ଯେ, ମାଡାମ୍ ବୋନାସିଏକ୍ସଙ୍କ ପିଛା ଧରିବ ନାହିଁ ବା ତାଙ୍କପାଇଁ ଅପେକ୍ଷା କରିବ ନାହିଁ। ଅଳ୍ପ କେତେ ସମୟ ପରେ ସେ ନିଜ ବାସଗୃହର ଦରଜା ନିକଟରେ ପହଞ୍ଚିଲା। ଶିଡ଼ିରେ ଧୀରେ ଧୀରେ ଉପରକୁ ଉଠିବା ସମୟରେ ଭାବିଲା, 'ଏହା ପରେ କଣ ହେବ କେଜାଣି ? ମୋତେ ବଡ଼ କୌତୂହଳ ବୋଧ ହେଉଛି– ଏସବୁର ଶେଷ ପରିଣତି କେଉଁଠି ?''

ମାଲିକକୁ ଦେଖି ପ୍ଲାଞ୍ଚେଟ୍ ଭିତରୁ କହିଉଠିଲା, ''ଆଜ୍ଞା, ବହୁତ ଖରାପ।'' ଦାର୍ତାୟାଁ କହିଲା, ''କଣ ହୋଇଛି ?''

''ସବୁତକ ଦୁଃଖର କଥା।''

''କଣ କହିଲୁ, ଠିକ୍ ଠିକ୍ ବୁଝାଇ ଦେ।''

''ପ୍ରଥମ କଥା ହେଲା, ଆଥସ୍‌ଙ୍କୁ ଗିରଫ କରାଯାଇଛି।''

''ଗିରଫ। ହେ ଭଗବାନ୍! କିନ୍ତୁ କାହିଁକି ?''

''ଏହି ଆପଣଙ୍କ ଘରେ ସେମାନେ ତାଙ୍କୁ ଦେଖିଲେ ଓ ସେ ଆପଣ ବୋଲି ଭାବି ତାଙ୍କୁ ଗିରଫ କରିନେଲେ।''

''କିଏ ସେମାନେ ?''

''କାର୍ଡ଼ିନାଲ୍‌ଙ୍କର ଯେଉଁ ଚାରିଜଣ ପ୍ରତିନିଧିଙ୍କୁ ଆପଣ ତଳ ମହଲାରୁ ତଡ଼ିଦେଇଥିଲେ, ଏମାନେ ସେହିମାନଙ୍କ ଲୋକ।''

''ତେବେ ଆଥସ୍ ସେମାନଙ୍କୁ ନିଜର ପରିଚୟ ତ ଦେଇଥିବେ ଓ କ'ଣ ଘଟିଛି ସେ କଥା ମଧ୍ୟ କିଛି ଜାଣନ୍ତି ନାହିଁ ବୋଲି କହିଥିବେ ?''

"ନା-ନା ! ବରଂ ଚୁପ୍ ରହିବାକୁ ମୋତେ କହିଲେ ଓ ମୋ କାନରେ କହିଲେ– 'ତୋର ମାଲିକ ମୁକ୍ତଥିବା ଦରକାର, କାରଣ ସେ ସବୁ ଜାଣନ୍ତି; ମାତ୍ର ମୁଁ କିଛି ଜାଣେନାହିଁ। ସେମାନଙ୍କର ବିଶ୍ୱାସ ସେମାନେ ତାଙ୍କୁ ଗିରଫ କରିଛନ୍ତି। ମୁଁ ତିନିଦିନ ପରେ ମୋର ପରିଚୟ ଦେବି ଏବଂ ମୁକ୍ତ ହେବାପାଇଁ ଦାବି କରିବି। ତାହାହେଲେ ଯାହା କରିବାକୁ ହେବ କରିବାପାଇଁ ସେ ସମୟ ପାଇବେ।"

ଦାର୍ତାୟାଁ ଗର୍ବରେ କହିଲା– "ସାବାସ୍ ଆଥସ୍! ଏଭଳି ବୁଦ୍ଧି କେବଳ ଆଥସ୍‌ଙ୍କ ମୁଣ୍ଡକୁ ଡୁକିପାରେ। ତା'ପରେ ତାଙ୍କୁ ନେଇ ସେମାନେ କ'ଣ କଲେ ?"

"ସେମାନେ ତାଙ୍କୁ ବାସ୍‌ଟାଇଲ୍ ବା ଇଭ୍‌କୁ ନେଇଯାଇଛନ୍ତି।"

"ଆଚ୍ଛା, ପୋର୍ଥସ୍ ବା ଆରାମିସ୍ ଏଠାକୁ ଆସିଥିଲେ କି ?"

"ନା ଆଜ୍ଞା !"

"ଆଚ୍ଛା, ତୁ ଏଠାରେ ଥା' ଏବଂ ସେମାନେ ଯଦି ଏଠାକୁ ଆସନ୍ତି, ଏଠାରେ ଯାହା ଯାହା ଘଟିଥିଲା, ସବୁ କିଛି ସେମାନଙ୍କୁ କହିଦେବୁ। ସେମାନଙ୍କୁ କହିବୁ, ପାର୍‌କୋନ୍‌ଠାରେ ମୁଁ ଅପେକ୍ଷା କରିଛି। ଏଠାରେ ରହିବା ମୋ ପକ୍ଷରେ ବିପଦ; ତା ଛଡ଼ା ଏହି ଘର ଉପରେ ସେମାନେ ଦୃଷ୍ଟି ରଖିପାରନ୍ତି।"

ଟ୍ରିଭିଲ୍‌ଙ୍କୁ ଆଥସ୍‌ଙ୍କ ଗିରଫଦାରି କଥା କହିବାପାଇଁ ଦାର୍ତାୟାଁ ସଙ୍ଗେ ସଙ୍ଗେ ବାହାରିପଡ଼ିଲା। ଦୁର୍ଭାଗ୍ୟବଶତଃ ସେ ଘରେ ନଥିଲେ, ଲୋଭର୍ ପ୍ରାସାଦକୁ ଯାଇଥିଲେ। ଟ୍ରିଭିଲ୍‌ଙ୍କୁ ଯଥାଶୀଘ୍ର ଏ ବିଷୟ ଜଣାଇବାକୁ ସ୍ଥିର କରି ଦାର୍ତାୟାଁ ଲୋଭର୍ ପ୍ରାସାଦକୁ ଯିବାପାଇଁ ବାହାରିଲା। ସେ କୌଣସି ନୌକାରେ ନଦୀ ପାର ହୋଇ ଆରପଟକୁ ଯିବ ବୋଲି ଭାବି ନଦୀକୂଳକୁ ଗଲା। ପକେଟରେ ହାତ ମାରି ଦେଖିଲା ଯେ, ପାଖରେ ରେଜା ପଇସା ନାହିଁ; ତେଣୁ ନଦୀ ତଟେ ତଟେ ଯାଇ ନୂତନ ପୋଲରେ ନଦୀ ପାରହେବାକୁ ସ୍ଥିର କଲା। ସେ ପୋଲର ନିକଟବର୍ତ୍ତୀ ହେବା ସମୟରେ ଦୁଇଜଣ ବ୍ୟକ୍ତି ଜଣେ ପୁରୁଷ ଓ ଅନ୍ୟ ଜଣେ ସ୍ତ୍ରୀ ଉପରେ ତା'ର ଦୃଷ୍ଟି ପଡ଼ିଲା। ସେମାନେ ତାର ବିପରୀତ ଦିଗରୁ ପୋଲଆଡ଼କୁ ଅଗ୍ରସର ହେଉଥିଲେ। ସ୍ତ୍ରୀଲୋକଜଣକ ମାଡାମ୍ ବୋନାସିଏକ୍‌ସଙ୍କ ଭଳି ଓ ପୁରୁଷଜଣକ ଆରାମିସ୍‌ଙ୍କ ଭଳି ଦେଖାଯାଉଥିଲେ। ଦାର୍ତାୟାଁ ତାର ଗତି ଟିକିଏ ଶିଥିଳ କରି ଚିନ୍ତିତଭାବରେ ପୋଲ ଉପରକୁ ଧୀରେ ଅଗ୍ରସର ହେଲା। ମାଡାମ୍

ବୋନାସିଏକ୍ସ ସେହି ଦିନ ସନ୍ଧ୍ୟାରେ କହିଥିଲେ ଯେ, ସେ ପୋର୍ଥସ୍, ଆରାମିସ୍ ବା ଆଥସ୍, କାହାକୁ ହେଲେ ଜାଣନ୍ତି ନାହିଁ। ସେ ଯାହାହେଉ, ଅଧରାତିରେ ଜଣେ ଅପରିଚିତ ବ୍ୟକ୍ତିର ବାହୁରେ ବାହୁ ଛନ୍ଦି ପାରିସ୍ ନଗରୀର ରାସ୍ତା ଉପରେ ମହିଳାଟି ଚାଲିଛନ୍ତି।

ଦାର୍ତାୟାଁ ଯେତେବେଳେ ନିଶ୍ଚିତରୂପେ ଜାଣିଲା ଯେ, ଉକ୍ତ ସ୍ତ୍ରୀଲୋକଜଣକ ମାଡାମ୍ ବୋନାସିଏକ୍ସ, ସେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲା। ମାଡାମ୍ ବୋନାସିଏକ୍ସଙ୍କ କାର୍ଯ୍ୟପ୍ରତି ଲକ୍ଷ୍ୟ ନ ଦେବାକୁ ସେ ପ୍ରତିଜ୍ଞାବଦ୍ଧ ହୋଇଥିଲେ ମଧ ଏହି ରହସ୍ୟ କଥା ନ ଜାଣି ଛାଡ଼ିବ ନାହିଁ ବୋଲି ସ୍ଥିର କଲା। ତେଣୁ ସେ ନିଜର ଚାଲିକୁ ଟିକିଏ ନିୟନ୍ତ୍ରିତ କରିନେଇ ଓ ପୋଲର ମଧ୍ୟଭାଗରେ ଥିବା ଆଲୋକ ସ୍ତମ୍ଭ ପାଖରେ ପହଞ୍ଚି ହଠାତ୍ ଝୁଲିପଡ଼ି ସେମାନଙ୍କର ସମ୍ମୁଖୀନ ହେଲା। ବିଦେଶୀ ଭାଷାରେ ଉକ୍ତ ପୁରୁଷଜଣକ ପଚାରିଲେ, ''ଆପଣ କ'ଣ ଚାହାନ୍ତି ?'' ଦାର୍ତାୟାଁ ବର୍ତ୍ତମାନ ଠିକ୍ ଜାଣିଗଲା ଯେ, ଉକ୍ତ ବ୍ୟକ୍ତି ଆରାମିସ୍ ନୁହନ୍ତି। ନିଜକୁ ଆୟତ୍ତାଧୀନ କରି ନପାରି ଦାର୍ତାୟାଁ ପଚାରିଲା, ''ଆପଣ ଆରାମିସ୍ ନୁହନ୍ତି ?''

ଉକ୍ତ ବ୍ୟକ୍ତି ଉତ୍ତର ଦେଲେ, ''ନା, ଆପଣଙ୍କ ଅନୁମାନ ଭୁଲ। ଆଚ୍ଛା, ଆମେ ତେବେ ଯାଉଁ।''

''ତେବେ ମୋର ଅନୁମାନ ଅଧା ଭୁଲ। ଆପଣଙ୍କ ସାଥୀ ସ୍ତ୍ରୀବ୍ୟକ୍ତିଜଣକ ମୋର ସମ୍ପୂର୍ଣ୍ଣ ପରିଚିତା।''

ମାଡାମ୍ ବୋନାସିଏକ୍ସ ଟିକିଏ ବିରକ୍ତିକର କଣ୍ଠରେ କହିଉଠିଲେ, ''ଆପଣ ଜଣେ ଭଦ୍ରଲୋକ ଭାବରେ ମୋ ନିକଟରେ ପ୍ରତିଜ୍ଞାବଦ୍ଧ। ମୁଁ ମଧ ଆପଣଙ୍କୁ ବିଶ୍ୱାସ କରିଥିଲି।'' ଦାର୍ତାୟାଁ ଟିକିଏ ବ୍ୟସ୍ତ ହୋଇ କହିଲା, ''କିନ୍ତୁ ମହାଶୟା ମୁଁ—।'' ତାଙ୍କ ସାଥୀ ପୁରୁଷଜଣକ ଦାର୍ତାୟାଁ ପ୍ରତି ଦୃଷ୍ଟି ନଦେଇ କହିଲେ, ''ମୋ ହାତ ଧର, ଆସ ଆମ ବାଟରେ ଆଗେଇଯିବା।''

ଦାର୍ତାୟାଁ କିନ୍ତୁ ଟିକିଏ ହେଲେ ଘୁଞ୍ଚିଲା ନାହିଁ। ତାର ଜୀବନରେ ଏହି ପ୍ରଥମ ଥର ପାଇଁ ସେ କ'ଣ କରିବ ବା କ'ଣ କହିବ ସ୍ଥିର କରିପାରିଲାନାହିଁ। ଉକ୍ତ ପୁରୁଷଜଣକ ଆଗକୁ ପାଦଟିଏ ମାତ୍ର ଅଗ୍ରସର ହୋଇ ତାଙ୍କ ହାତରେ ଦାର୍ତାୟାଁକୁ ଗୋଟିଏ ପଟକୁ ପେଲିଦେଲେ। ଦାର୍ତାୟାଁ ପଛକୁ କୁଦିପଡ଼ି ନିଜର ତରବାରି ଟାଣିଆଣିଲା ଏବଂ ସେହି ଅଚିହ୍ନା ବ୍ୟକ୍ତି ମଧ ନିଜର ତରବାରି କୋଷମୁକ୍ତ କଲେ। ମାଡାମ୍ ବୋନାସିଏକ୍ସ

ଦୁହିଁଙ୍କ ତରବାରିକୁ ତାଙ୍କର ଦୁଇ ହାତରେ ଧରିପକାଇ ଦୁହିଁଙ୍କ ମଝିକୁ ଚାଲିଆସିଲେ ଏବଂ କହିଲେ, ''ହଜୁର, ଭଗବାନଙ୍କ ନାମରେ– ଏପରି କରନ୍ତୁ ନାହିଁ।''

ଦାର୍‌ତାୟାଁ ସଙ୍ଗେ ସଙ୍ଗେ ବୁଝିପାରି କହିଲା, ''ବକିଂହାମ୍ ଡ୍ୟୁକ୍! ମୋତେ କ୍ଷମାକରନ୍ତୁ; ଆପଣଙ୍କୁ ଓ ମାଡାମ୍ ବୋନାସିଏକ୍ସଙ୍କୁ ମୁଁ କିପରି ସାହାଯ୍ୟ କରିପାରେ, ମୋତେ କହନ୍ତୁ। ମୁଁ ଆପଣଙ୍କୁ ସହସ୍ରବାର କ୍ଷମାମାଗୁଛି।'' ବକିଂହାମ୍ ଡ୍ୟୁକ୍ ଦାର୍‌ତାୟାଁ ପ୍ରତି ନିଜର ହସ୍ତ ପ୍ରସାରଣ କଲେ। ସେ ମଧ ତାହାକୁ ଭକ୍ତିରେ ଦୃଢ଼ଭାବରେ ଧାରଣକଲା। ତା'ପରେ ସେ କହିଲେ, ''ତୁମେ ଜଣେ ଅତି ସାହସୀ ଯୁବକ ଭଳି ଜଣାଯାଉଛ। ଆମଠାରୁ ଟିକିଏ ଦୂରରେ ରହି ଆମ ପଛେ ପଛେ ଲୋଭର୍ ପର୍ଯ୍ୟନ୍ତ ଆସ ଓ ବିପଦ ପଡ଼ିଲେ ଆମକୁ ସାହାଯ୍ୟକର।''

ଡ୍ୟୁକ୍ ଓ ମାଡାମ୍ ବୋନାସିଏକ୍ସ ଆଗେ ଆଗେ ଚାଲିଲେ ଓ ଦାର୍‌ଚାୟାଁ ସେମାନଙ୍କ ପଛରେ ଚାଲିଲା। ସୌଭାଗ୍ୟବଶତଃ ଦାର୍‌ତାୟାଁକୁ ନିଜର ଅନୁରକ୍ତି ଦେଖାଇବା ପାଇଁ ସେପରି କିଛି ସୁବିଧା ଜୁଟିନଥିଲା। ଲୋଭର୍ ପ୍ରାସାଦରେ ପହଞ୍ଚିଲା ପରେ ମାଡାମ୍ ବୋନାସିଏକ୍ସ ଧୀରେ ଧୀରେ ଦରଜା ଉପରେ ତିନିଥର ଟିପ ମାରିଲେ। ଅତି ଧୀରଭାବରେ ଦରଜା ଖୋଲିଗଲା ଏବଂ ସେ ଦୁହେଁ ଭିତରକୁ ଚାଲିଗଲେ। ମୁହୂର୍ତ୍ତେ ମାତ୍ର ଅପେକ୍ଷା କରି ଦାର୍‌ତାୟାଁ ପ୍ରାସାଦର ସମ୍ମୁଖ ଭାଗକୁ ଆସି ଟ୍ରିଭିଲ୍‌ଙ୍କ ସହ ସାକ୍ଷାତ୍ ପାଇଁ ଚାଲିଗଲା। ରକ୍ଷୀମାନଙ୍କର ମୁଖ୍ୟ କହିଲା ଯେ, ତଦାରଖ କାର୍ଯ୍ୟ ସରିଯାଇଛି ଏବଂ ଟ୍ରିଭିଲ୍ ଶ୍ରୀହଜୁରଙ୍କୁ ତାଙ୍କ ଭକ୍ତି ପ୍ରଦର୍ଶନ ପାଇଁ ଚାଲିଯାଇଛନ୍ତି। ତେଣୁ ଆଥସ୍‌ଙ୍କ ଗ୍ରେପ୍ତାରି ବିଷୟ ଜଣାଇବା ପାଇଁ ସକାଳ ପର୍ଯ୍ୟନ୍ତ ଅପେକ୍ଷା କରିବା ବ୍ୟତୀତ ଅନ୍ୟ ଉପାୟ ନଥିଲା।

ଫାର୍‌କୋନ୍‌କୁ ଯିବା ରାସ୍ତାରେ ଦାର୍‌ତାୟାଁ ଚିନ୍ତା କରିବାକୁ ଲାଗିଲା, 'ଯାହାହେଉ ବର୍ତ୍ତମାନ ଆଥସ୍‌ଙ୍କ ଉପରେ କୌଣସି ବିପଦ ନାହିଁ; ବରଂ ବନ୍ଦିଶାଳାରେ ଅନୁସନ୍ଧାନ କରୁଥିବା ଅଫିସରଙ୍କ ବାଉଳାଚାଉଳା ଦେଖି ସେ ବେଶ୍ ଆନନ୍ଦ ଅନୁଭବ କରୁଥିବେ।'

ଫାର୍‌କୋନ୍‌ଠାରେ ପୋର୍ଥସ୍ ଓ ଆରାମିସ୍‌ଙ୍କୁ ତାକୁ ଅପେକ୍ଷା କରିଥିବାର ସେ ଦେଖିଲା। ସେ ତାଙ୍କୁ ଆଥସ୍‌ଙ୍କ ବିଷୟ କହିଲା ଏବଂ ଅଧିକ କିଛି ଟିକିନିଖି ନ କହି ମାଡାମ୍ ବୋନାସିଏକ୍ସଙ୍କ ବିଷୟ ଯେ ପରିଷ୍କାର ହୋଇଯାଇଛି, ସେ କଥା ଜଣାଇଲା।

# ବକିଂଗ୍‌ହାମ୍ ଡ୍ୟୁକ୍‌ଙ୍କ ସ୍ୱୀକାରୋକ୍ତି

ମାଡାମ୍ ବୋନାସିଏକ୍‌ସ ପାଖ ଛୋଟ ଘରଟିର ଦରଜା ଧୀରେ ବନ୍ଦ କରିଦେଲେ ଏବଂ ବକିଂଗ୍‌ହାମ୍ ଡ୍ୟୁକ୍‌ଙ୍କୁ କିଛି ଦୂର କାନ୍ଧ କଢ଼େ କଢ଼େ ନେଲେ । ସେମାନେ ଯାଇ ପରିଚାରକମାନଙ୍କ ଦରଜା ନିକଟରେ ପହଞ୍ଚିଲେ । ମାଡାମ୍ ବୋନାସିଏକ୍‌ସ ଏହି ଦରଜାଟିକୁ ହାତରେ ଠେଲିଦେଲାମାତ୍ରେ ତାହା ଖୋଲିଗଲା । ଦୁହେଁଯାକ କୋଠରି ଭିତରେ ପ୍ରବେଶ କଲା ପରେ ମାଡାମ୍ ବୋନାସିଏକ୍‌ସ ଦ୍ୱାର ବନ୍ଦ କରି ଭିତରୁ ଚାବି ଦେଲେ । ବର୍ତ୍ତମାନ ସେ ଦୁହେଁ ଘନ ଅନ୍ଧକାର ମଧ୍ୟରେ; କିନ୍ତୁ ମାଡାମ୍ ବୋନାସିଏକ୍‌ସଙ୍କୁ ଏହି ସ୍ଥାନର ପ୍ରତ୍ୟେକ ଗଳିକନ୍ଦି ସୁଡ଼ଙ୍ଗ ଓ ଶିଡ଼ି ଭଲଭାବରେ ଜଣାଥିଲା । ସେ ଡ୍ୟୁକ୍‌ଙ୍କ ହାତ ଧରି ତାହାଙ୍କୁ ଏକ ସୁଡ଼ଙ୍ଗ ଭିତରଦେଇ ନେଇଗଲେ; ଏହି ସୁଡ଼ଙ୍ଗର ଶେଷଭାଗରେ ଥିବା ଗୋଟିଏ ଦରଜାର ଚାବି ଖୋଲିଲେ ଏବଂ ଡ୍ୟୁକ୍‌ଙ୍କୁ ସେହି କୋଠରି ମଧ୍ୟକୁ ଧୀରେ ଠେଲିଦେଲେ । ଉକ୍ତ କୋଠରି ମଧ୍ୟରେ ଗୋଟିଏ ମହମବତି ଜଳୁଥିଲା । ତେଣୁ ଗୃହଟି ସାମାନ୍ୟ ଆଲୋକିତ ହୋଇଥିଲା । ସେ ଚୁପ୍ ଚୁପ୍ କହିଲେ, "ହଜୁର୍, ଆପଣ ଏହିଠାରେ ଥାନ୍ତୁ । ଯଥାଶୀଘ୍ର ଜଣେ କେହି ଆପଣଙ୍କ ପାଖକୁ ଆସିବେ ।" ଏହା କହି ସେ ବାହାରକୁ ଚାଲିଗଲେ ।

ଅଳ୍ପ କେତେ ମିନିଟ୍ ପରେ ଏକ ମୋଟା ପରଦା ପଛପଟେ ଥିବା ଗୋଟିଏ ଦରଜା ଖୋଲିଗଲା ଓ ଜଣେ ସ୍ତ୍ରୀଲୋକ ଗୃହ ମଧ୍ୟରେ ପ୍ରବେଶ କଲେ । ସେ ହେଉଛନ୍ତି ଫ୍ରାନ୍‌ସର ରାଣୀ ଆନ୍ । ରାଣୀ ସେତେବେଳକୁ ୨୬ ବର୍ଷର ତରୁଣୀ । ସୌନ୍ଦର୍ଯ୍ୟ ତାଙ୍କ ଶରୀରରେ ଲହଡ଼ି ଭାଙ୍ଗୁଥାଏ । ମୁହୂର୍ତ୍ତକ ପାଇଁ ଡ୍ୟୁକ୍‌ଙ୍କ ପାଟିରୁ କଥା ବାହାରିଲା ନାହିଁ । ରାଣୀଙ୍କର ସେପରି ସୌନ୍ଦର୍ଯ୍ୟ ସେ ଆଗରୁ କେବେ ଦେଖି ନ ଥିଲେ । ରାଣୀ ଆଗକୁ ଗୋଟିଏ ମାତ୍ର ପାଦ ଅଗ୍ରସର ହେବାରୁ ଡ୍ୟୁକ୍ ତାଙ୍କ ସମ୍ମୁଖରେ ଗୋଟିଏ ଆଣ୍ଠୁ ମାଡ଼ି ବସିପଡ଼ିଲେ । ରାଣୀ ଅତି ଧୀରକଣ୍ଠରେ କହିଲେ, "ମୋର ପ୍ରଭୁ, ଆପଣ ଜାଣନ୍ତି ଯେ ମୁଁ ଆପଣଙ୍କୁ ପତ୍ର ଦେଇ ଡକାଇ ନଥିଲି ।

ଡ୍ୟୁକ୍ ଉତ୍ତର ଦେଲେ, "ତା ମୁଁ ଜାଣେ । ଆପଣଙ୍କୁ ଦେଖିଲି – ସେଇ ମୋ ପାଇଁ ପରମ ଭାଗ୍ୟ ।"

"କିନ୍ତୁ ଆପଣ ଜାଣନ୍ତି ନାହିଁ, କି ପ୍ରକାର ପରିସ୍ଥିତିରେ, କି ଅବସ୍ଥାରେ ଓ କାହିଁକି ମୁଁ ଆପଣଙ୍କ ସହ ସାକ୍ଷାତ୍ କଲି। ଆପଣ ଫ୍ରାନ୍ସକୁ ଗୁପ୍ତଭାବରେ ଆସିବା ଦ୍ୱାରା ନିଜ ଜୀବନ ସହିତ ମୋର ସମ୍ମାନ ମଧ୍ୟ ବିପନ୍ନ କରିଛନ୍ତି। ଆପଣଙ୍କ ସହ ମୋର ଆଉ କେବେ ସାକ୍ଷାତ୍ ନ ହେବା ଭଲ।"

"ମୋର ରାଣୀ, ତୁମର ମଧୁର କଣ୍ଠସ୍ୱରଯୋଗୁଁ ତୁମ ନିଷ୍ଠୁର କଥା ସହ୍ୟ ହେଉଛି। ଯେଉଁ ଦୁଇଟି ହୃଦୟ ପରସ୍ପରର, ତାହାକୁ ବିଚ୍ଛିନ୍ନ କରିବା ପାଇଁ ଏହି ପୃଥିବୀରେ କୌଣସି ଶକ୍ତି ନାହିଁ।"

ରାଣୀ କୋମଳ ଭାବରେ କହିଲେ, "ପ୍ରଭୁ, ଆପଣ ତାହା ଭୁଲିଯାଆନ୍ତୁ। ମୁଁ ଆପଣଙ୍କୁ ପ୍ରେମ କରେ ବୋଲି କେବେ ଆପଣଙ୍କୁ କହିନାହିଁ।"

"ତୁମେ ମୋତେ ପ୍ରେମ କରନାହିଁ ବୋଲି କହିନାହଁ। ତିନିବର୍ଷ ପରେ ଆଜି ତୁମ ସହିତ ମୋର ଦେଖା। ତୁମକୁ ମୁହୂର୍ତ୍ତେ ସୁଦ୍ଧା ଭୁଲିନାହିଁ। ସେଦିନ ତୁଳନାରେ ତୁମର ସୌନ୍ଦର୍ଯ୍ୟ ବର୍ତ୍ତମାନ ଶହେଗୁଣ ବୃଦ୍ଧିପାଇଛି।"

ଡ୍ୟୁକ୍‌ଙ୍କ କଥା ରାଣୀଙ୍କର ହୃଦୟ ସ୍ପର୍ଶ କଲେ ମଧ୍ୟ ସେ ଚୁପ୍ ଚୁପ୍ କହିଲେ, "କି ପାଗଳାମି, କେବଳ ପଦ୍ଧକଥା ମନେପକାଇ ଆପଣ ପ୍ରେମାତୁର ହୋଇପଡୁଛନ୍ତି।"

"ହାୟ! ମୋର ଏହି ସ୍ମୃତି ବ୍ୟତୀତ ଆଉ କଣ ଅଛି। ସେହି ସ୍ମୃତି ମୋର ଏକମାତ୍ର ସୁଖ, ସମ୍ପଦ ଓ ଆଶା। ତୁମକୁ ପ୍ରତି ଥର ଦେଖିଲାମାତ୍ରେ ମୁଁ ଗୋଟିଏ ନୂତନ ହୀରକ ମୋର ହୃଦୟରେ ସାଇତି ରଖୁଛି ଯେପରି। ଏହା ତୁମ ସହିତ ମୋର ଚତୁର୍ଥ ସାକ୍ଷାତ୍।"

ରାଣୀ ଟିକିଏ ଲାଜରା ହୋଇ କହିଲେ, "ସେହି ଦୁର୍ବଳ ମୁହୂର୍ତ୍ତରେ ଆମେ ଦୁହେଁ ପରସ୍ପରକୁ ଭଲପାଉଥିଲେ;- କିନ୍ତୁ ଯାହାହେଉ ପ୍ରଭୁ, ମୁଁ ଜଣେ ନାରୀ ଭାବରେ ଯାହା ଇଚ୍ଛା କରିଥିଲେ ମଧ, ରାଣୀ ଭାବରେ ତାହା କରିପାରିବି ନାହିଁ।"

"ତୁମେ ତାହାହେଲେ ରାଣୀ ହୋଇନଥିଲେ ମୋତେ ନିଶ୍ଚୟ ପ୍ରେମ କରିପାରିଥାଆନ୍ତ। ତୁମ ପଦବୀ ତୁମକୁ ମୋ ପ୍ରତି ଏତେ ନିଷ୍ଠୁର କରିପାରିଛି।"

ରାଣୀ ଧୀର କଣ୍ଠରେ କହିଲେ, "ହେ ଭଗବାନ୍, ଏ ଅଭିଯୋଗ ମୁଁ ଆଦୌ ସହିପାରୁନାହିଁ। ଈଶ୍ୱର ଜାଣନ୍ତି, ମୁଁ ଆପଣଙ୍କୁ ଭଲପାଏ କି ନାହିଁ। ମୋ ପ୍ରତି ଦୟା କରନ୍ତୁ, ଏହି ସ୍ଥାନ ଛାଡ଼ି ଶୀଘ୍ର ଚାଲିଯାଆନ୍ତୁ। ଯଦି ଏ ଦେଶରେ ଆପଣଙ୍କ ପ୍ରତି କୌଣସି ବିପଦ ଆସେ, ମୁଁ ଦୁଃଖରେ ପାଗଳ ହୋଇଯିବି। ମୁଁ ଆପଣଙ୍କୁ ଅନୁରୋଧ କରୁଛି, ଆପଣ ଯା'ନ୍ତୁ।"

ବକିଂହାମ୍ ଡ୍ୟୁକ୍ ସତେ ଯେମିତି ରାଣୀଙ୍କ କଥା ଶୁଣିପାରିନାହାନ୍ତି, ସେହି ଢଙ୍ଗରେ କହିଲେ, ''ଆଃ, ତୁମେ କି ସୁନ୍ଦର! ମୁଁ ତୁମକୁ କେତେ ଭଲପାଏ।'' ରାଣୀ କମ୍ପିତ ଗଳାରେ କହିଲେ, ''ଅନୁଗ୍ରହ କରି ଆପଣ ସଙ୍ଗେ ସଙ୍ଗେ ଚାଲିଯାଆନ୍ତୁ; ବରଂ ଏଠାକୁ ରାଜଦୂତ ଭାବରେ ଫେରିଆସନ୍ତୁ। ଜଣେ ମନ୍ତ୍ରୀ ଭାବରେ ଫେରନ୍ତୁ। ରକ୍ଷୀପରିବେଷ୍ଟିତ ହୋଇ ଆସନ୍ତୁ; ସେମାନେ ଆପଣଙ୍କୁ ରକ୍ଷାକରିବେ। ପରିଚାରକଗଣ ଧରି ଆସନ୍ତୁ, ଯେଉଁମାନେ କି ଆପଣଙ୍କ ସେବାରେ ନିଯୁକ୍ତହେବେ। ସେତେବେଳେ ଆପଣଙ୍କ ଜୀବନପାଇଁ ମୋର ଆଶଙ୍କା ନଥିବ ଏବଂ ଦରବାରରେ ସମୟେ ସମୟେ ଆପଣଙ୍କୁ ମୁଁ ଦେଖିପାରୁଥିବି। ତାହାହିଁ ମୋତେ ଆନନ୍ଦଦେବ।''

''ତୁମେ ଯାହା କହୁଚ ତାହା କ'ଣ ଠିକ୍?''

''ନିଶ୍ଚୟ।''

''ମୋତେ ତାହାହେଲେ ଏପରି କିଛି ସ୍ମାରକୀ ଦିଅ, ଯେଉଁଥିରେ ମୁଁ ଜାଣିବି ଯେ ମୁଁ ସ୍ୱପ୍ନ ଦେଖୁନଥିଲି।''

''ତାହାହେଲେ କଣ ଆପଣ ସଙ୍ଗେ ସଙ୍ଗେ ଚାଲିଯିବେ?''

''ନିଶ୍ଚୟ।''

''ଆପଣ ଫ୍ରାନ୍ସ ମଧ ଛାଡ଼ି ଚାଲିଯିବେ?''

''ମୁଁ ପ୍ରତିଜ୍ଞା କରୁଛି।''

''ତାହାହେଲେ ମୁହୂର୍ତ୍ତେ ମାତ୍ର ଅପେକ୍ଷାକରନ୍ତୁ।''

ରାଣୀ ଅଳ୍ପ କେତେକ ମୁହୂର୍ତ୍ତ ପାଇଁ ସେ କୋଠରି ଛାଡ଼ି ଚାଲିଗଲେ ଓ ତାଙ୍କର ଗୋଟିଏ କ୍ଷୁଦ୍ର ଗହଣା ବାକ୍ସ ଧରି ଫେରିଆସିଲେ। ଏହି ରତ୍ନାଧାର ଉପରେ ତାଙ୍କ ଦସ୍ତଖତ ସୁବର୍ଣ୍ଣରେ ଖଚିତ ହୋଇଥିଲା। ସେ କହିଲେ, ''ଆପଣ ଏହାକୁ ନିଅନ୍ତୁ, ଏହାକୁ ରଖନ୍ତୁ ଓ ମୋର ସ୍ମୃତିରେ ଏଥିରେ ଯାହା ଅଛି ତାହା ପରିଧାନ କରନ୍ତୁ।'' ବକିଂହାମ୍ ରତ୍ନାଧାରଟିକୁ ଗ୍ରହଣ କଲେ। ରାଣୀ ଲୋତକପୂର୍ଣ୍ଣ ଚକ୍ଷୁରେ ହସ୍ତ ପ୍ରସାରଣ କଲେ ଓ ସେ ସେଥିରେ ଚୁମ୍ବନ ଦେଲେ। ପ୍ରତିଜ୍ଞାବଦ୍ଧ ବକିଂହାମ୍ ସଙ୍ଗେ ସଙ୍ଗେ କୋଠରି ଛାଡ଼ି ଚାଲିଗଲେ। ବାରଣ୍ଡାରେ ମାଡାମ୍ ବୋନାସିଏକ୍ସ ଅପେକ୍ଷା କରିଥିଲେ। ପୂର୍ବପରି ସାବଧାନତାସହକାରେ ସେମାନେ ଲୋଭର୍ ରାଜପ୍ରାସାଦ ପରିତ୍ୟାଗ କଲେ।

# ବାଷ୍ଟାଇଲ୍ ଦୁର୍ଗରେ ମିଷ୍ଟର୍ ବୋନାସିଏକ୍ସ

ବୋନାସିଏକ୍ସଙ୍କୁ ଗିରଫ କରି ବାଷ୍ଟାଇଲ୍ ଦୁର୍ଗକୁ ନିଆଯାଇଥିଲା। ସେତିକିରେ ସେ ହତାଶ ହୋଇପଡ଼ିଲେ। ରାଜକର୍ମଚାରୀ ତାଙ୍କୁ କହିଲେ ଯେ ଯଦି ସେ ଜାଣିଥିବା ସମସ୍ତ କଥା ନ କୁହନ୍ତି, ତାହାହେଲେ କିପରି ଭାବରେ ତାଙ୍କଠାରୁ କଥା ବାହାର କରାଯିବ ତାହାର ବ୍ୟବସ୍ଥା ସେ ମଧ କରିପାରିବେ। ବନ୍ଦୀଙ୍କୁ କୌଣସି ପ୍ରଶ୍ନ ନ ପଚାରି, ଉକ୍ତ କର୍ମଚାରୀଜଣକ ସାଧାରଣ ନାଗରିକମାନେ ସର୍ବସାଧାରଣ କାର୍ଯ୍ୟରେ ହସ୍ତକ୍ଷେପ କଲେ କି ଭୟଙ୍କର ବିପଦରେ ପଡ଼ନ୍ତି, ସେ ବିଷୟରେ ଏକ ଦୀର୍ଘ ବକ୍ତୃତା ଦେବାକୁ ଲାଗିଲେ। ମହାମହିମ କାର୍ଡିନାଲ୍‌ଙ୍କ କ୍ଷମତା ଯେ କେତେ, ଉକ୍ତ ବିଷୟ କର୍ମଚାରୀଜଣକ ବିସ୍ତୃତ ଭାବରେ ବର୍ଣ୍ଣନା କଲେ। ସେ ତାଙ୍କର ଶ୍ୟେନଦୃଷ୍ଟି ଏହି ତ୍ରସ୍ତ ବନ୍ଦୀ ଉପରେ ନିକ୍ଷେପ କରି ସେହି ଭୟଙ୍କର ପରିସ୍ଥିତି ବିଷୟରେ ଚିନ୍ତା କରିବାପାଇଁ ତାଙ୍କୁ ଟିକିଏ ସୁଯୋଗ ଦେଲେ।

ଏ ସବୁର କୌଣସି ଆବଶ୍ୟକତା ନଥିଲା କାରଣ ବୋନାସିଏକ୍ସ ମାତ୍ର ଦୁଇ ମିନିଟ୍ ମଧରେ ସବୁକଥା ଜାଣିପାରିଥିଲେ। ସେ ବୁଝାଇଦେଇ କହିଲେ, ''ମହାମହିମ କାର୍ଡିନାଲ୍‌ଙ୍କୁ ସେ ଯେତିକି ଭକ୍ତି କରନ୍ତି, ଏପରି ହୁଏତ କେହି କରୁନଥିବେ; ଆଉ ଉତ୍ତମ ଶାସନ ପାଇଁ ଏଭଳି ଜଣେ ବ୍ୟକ୍ତିଙ୍କୁ ପାଇ ଫ୍ରାନ୍ସ ଯେ କିପରି ଭାଗ୍ୟ ଅର୍ଜନ କରିଛି, ଯାହା ବର୍ଣ୍ଣନା କରିବାକୁ ଭାଷା ନାହିଁ।''

କର୍ମଚାରୀଜଣକ କହିଲେ, ''ବାସ୍ତବିକ, ଯଦି ଏପରି କଥା, ତାହାହେଲେ ଷଡ଼ଯନ୍ତ୍ର କରିବା ଅଭିଯୋଗରେ ତୁମକୁ ବାଷ୍ଟାଇଲ୍ ଦୁର୍ଗରେ ବନ୍ଦୀ କରାଯାଇଛି କାହିଁକି ?''

ବୋନାସିଏକ୍ସ ଚିତ୍କାର କରିଉଠିଲେ, ''ଷଡ଼ଯନ୍ତ୍ର ! ମୋ ଭଳି ଜଣେ ନିରୀହ ବ୍ୟବସାୟୀ !''

କର୍ମଚାରୀ ପଚାରିଲେ, ''ତୁମର ଜଣେ ସ୍ତ୍ରୀ ଅଛନ୍ତି, ନୁହେଁ କି ?''

''ହଁ ଆଜ୍ଞା, ମୋର ଜଣେ ସ୍ତ୍ରୀ ଥିଲେ।''

''ଆଚ୍ଛା, ବର୍ତ୍ତମାନ ଯଦି ନାହାନ୍ତି, ତାହାହେଲେ ତାଙ୍କୁ କଲା କଅଣ ?''

''ସେ ତାଙ୍କୁ ଟେକିନେଇ ଚାଲିଗଲେ ଆଜ୍ଞା !''

କର୍ମଚାରୀଜଣକ ସଙ୍ଗେ ସଙ୍ଗେ ପଚାରିଲେ, ''କିଏ ?''

ବୋନାସିଏକ୍ସ ଭାବିଲେ, ସେ ଟିକିଏ ଅଧିକ କହିଦେଲେ। ତେଣୁ ତ୍ରସ୍ତ ହୋଇ ଉତ୍ତର ପ୍ରଦାନ କଲେ, ''ମୁଁ– ଠିକ୍ ଜାଣେ ନାହିଁ ଆଜ୍ଞା – ମୁଁ ମାତ୍ର ସନ୍ଦେହରେ କହୁଛି।''

''ଆଚ୍ଛା, ତୁମେ କାହାକୁ ସନ୍ଦେହ କରୁଛ ?''

ଦୁର୍ଭାଗା ବୋନାସିଏକ୍ସ ବଡ଼ ଅଡୁଆରେ ପଡ଼ିଗଲେ। ସେ ଯଦି ସବୁ ବିଷୟରେ 'ନା' କହନ୍ତି, ତାହାହେଲେ ସେମାନେ ଭାବିବେ ଯେ, ସେ ବହୁତ କିଛି ଜାଣି ମଧ କହୁନାହାନ୍ତି। ସେ ଯାହା ଜାଣନ୍ତି ଯଦି କହିଦିଅନ୍ତି, ତାହାହେଲେ ସେ ସାହାଯ୍ୟ କରିବାକୁ ରାଜି ବୋଲି ପ୍ରମାଣିତ ହେବ। ତେଣୁ ଯେତେଟା ପାରନ୍ତି ସବୁ ପ୍ରଶ୍ନର ଉତ୍ତର ଦେବାପାଇଁ ସେ ନିଷ୍ପତ୍ତି ନେଲେ। ସେ କହିଲେ, ''ଜଣେ କୃଷ୍ଣକାୟ ଡେଙ୍ଗା ବ୍ୟକ୍ତିଙ୍କୁ ମୁଁ ସନ୍ଦେହ କରୁଛି। ତାଙ୍କର ପୋଷାକପତ୍ରରୁ ମୁଁ ଲକ୍ଷ୍ୟ କରିଛି, ସେ ଜଣେ ଭଦ୍ରଲୋକ। ମୋର ସ୍ତ୍ରୀ ଲୋଭର ରାଜପ୍ରାସାଦରେ ସେହି ଭଦ୍ରବ୍ୟକ୍ତିଙ୍କୁ ମୋତେ ଚିହ୍ନାଇ ଦେଇଥିଲେ। ଆଜ ମଧ ମୋର ସ୍ତ୍ରୀ କହୁଥିଲେ ଯେ, ସେ ବଜାର କରିବାକୁ ଯିବା ସମୟରେ ଉକ୍ତ ଭଦ୍ରଲୋକ ବହୁବାର ତାଙ୍କ ପିଛା ଧରିଥିଲେ।''

ଏହି ବର୍ଣ୍ଣନା ଶୁଣି ଉକ୍ତ କର୍ମଚାରୀ ଟିକିଏ ଅସ୍ୱସ୍ତି ବୋଧକଲେ। ପଚାରିଲେ – ''ତାଙ୍କର ନାମ କ'ଣ ?''

''ମୁଁ ତାଙ୍କ ନାମ ଜାଣେନାହିଁ। ତେବେ ସହସ୍ର ବ୍ୟକ୍ତିଙ୍କ ମଧରେ ସୁଦ୍ଧା ମୁଁ ଦେଖିଲାମାତ୍ରେ ତାଙ୍କୁ ଚିହ୍ନାଇଦେବି।''

କର୍ମଚାରୀ ଅଧିକ ଅସ୍ୱସ୍ତି ବୋଧକଲେ। ସେ ସଙ୍ଗେ ସଙ୍ଗେ କହିଲେ, ''ହଠାତ୍! ଏକହଜାର ଲୋକଙ୍କ ମଧରେ!'' ତାଙ୍କ ଲେଖିବାରୁ ମୁଣ୍ଡ ଟେକି କର୍ମଚାରୀଜଣକ କହିଲେ, ''ରକ୍ଷିବୃନ୍ଦ, ଏଠାରୁ ବନ୍ଦୀକୁ ନେଇଯାଅ।'' ଜଣେ ରକ୍ଷୀ କହିଲା, ''ତାହାଙ୍କୁ ନେଇ ଆମେ କେଉଁଠି ରଖିବୁ।'' ଅଧୈର୍ଯ୍ୟସହକାରେ କର୍ମଚାରୀ କହିଉଠିଲେ, ''କାହିଁକି, ତାଙ୍କୁ ସେ ଅନ୍ଧକାର କୋଠରିରେ ରଖ।''

''କେଉଁଟାରେ ?''

କର୍ମଚାରୀ ଚିତ୍କାର କରିଉଠିଲେ, ''ଯେଉଁଟା ପ୍ରଥମରୁ ଖାଲି ଥିବ।''

ଏହି ଦୁର୍ଭାଗା ବ୍ୟକ୍ତିଜଣକ ବିଳାପ କରିବାକୁ ଲାଗିଲେ, ''ହାୟ! ହାୟ! ମୋ ସ୍ତ୍ରୀ କି ଗୁରୁତର ଅପରାଧ କରିଛି? ସେମାନଙ୍କର ବିଶ୍ୱାସ ମୁଁ ତାଙ୍କୁ ସାହାଯ୍ୟ କରିଛି; ତେଣୁ ତାଙ୍କ ସହ ମୋତେ ମଧ ଦଣ୍ଡ

ଦିଆଯିବ। ରାତି ପାହିଲେ ଫାଶିଖୁଣ୍ଟରେ ଚଢ଼ାଇବେ। ହେ ଭଗବାନ, ମୋତେ ଦୟାକର।'' ରକ୍ଷୀମାନେ ଏଭଳି ଚିତ୍କାର ଓ ବିଳାପ ସହିତ ବେଶ୍ ପରିଚିତ। ସେମାନେ ଏହି ଅର୍ଦ୍ଧଚେତନ ବନ୍ଦୀକୁ ଟେକି ନେଲେ। ଖୁବ୍ ତରତରରେ କର୍ମଚାରୀଜଣକ ତାଙ୍କ ପତ୍ରଲେଖା ଶେଷକଲେ ଏବଂ ତାଙ୍କର ଭୃତ୍ୟ ହାତରେ ପତ୍ରଖଣ୍ଡିକ ପଠାଇଦେଲେ।

ସେଦିନ ରାତିରେ ବୋନାସିଏକ୍ସଙ୍କୁ ଆଉ ନିଦ ହେଲାନାହିଁ। କୋଠରିର ଗୋଟିଏ କୋଣରେ ସେ ବସିରହି ଦୀର୍ଘ ନିଶ୍ୱାସ ପକାଉଥାନ୍ତି। ପ୍ରଭାତ ନିକଟ ହେବାରୁ ଭୟରେ ତାଙ୍କ କପାଳରୁ ଝାଳ ବୋହିଲା। ଏହି ସମୟରେ ଗୋଟାଏ ଶବ୍ଦ କରି କୋଠରିର ଦରଜାଟି ଖୋଲିଗଲା। ସେ ଭୟଙ୍କର ଭାବରେ ଚମକି ଉଠି ଭୂମି ଉପରେ ଅଚେତ ହୋଇ ପଡ଼ିଗଲେ।

## ଭୁଲ ଚିହ୍ନଟ

ସେଦିନ ସକାଳୁ ଆଉ ଅଧିକ ତଦନ୍ତ ପାଇଁ ବୋନାସିଏକ୍ସଙ୍କୁ ଜଣେ ଇନ୍‌କ୍ୱାରୀ ଅଫିସରଙ୍କ ନିକଟକୁ ନିଆଗଲା। ଅଫିସର କହିଲେ, ''ଗତ ରାତିରୁ ତୁମ ବିଷୟ ବଡ଼ ଜଟିଳ ହୋଇପଡ଼ିଲାଣି। ତୁମେ ଯଦି ସବୁକଥା ଖୋଲାଖୋଲି ପ୍ରକାଶ କରିଦେବ, ତାହାହେଲେ କାର୍ଡିନାଲ୍‌ଙ୍କ ଅସନ୍ତୋଷରୁ ରକ୍ଷା ପାଇପାରିବ।''

ବୋନାସିଏକ୍ସ କହିଲେ, ''ମୁଁ ଯାହା କିଛି ଜାଣିଛି ସେ ସମସ୍ତ ପ୍ରକାଶ କରିବାପାଇଁ ବିଶେଷ ବ୍ୟଗ୍ର।''

''ପ୍ରଥମ କଥା ହେଲା, ତୁମର ସ୍ତ୍ରୀ ବର୍ତ୍ତମାନ କେଉଁଠାରେ?''

''କାହିଁକି, ମୁଁ ତ ଆଗରୁ କହିସାରିଛି, ତାଙ୍କୁ କିଏ ହରଣଚାଳ କରିଛି!''

''ମୁଁ ଜାଣେ ତୁମେ ଏକଥା କହିଥିଲ; ମାତ୍ର ଗତକାଲି ଉପରବେଳା ସେ ଖସି ଚାଲିଯାଇଛନ୍ତି। ଆଉ ଏହା ତୁମଯୋଗୁଁ ଘଟିଛି।''

''ମୋତେ ବିଶ୍ୱାସ କରନ୍ତୁ ଆଜ୍ଞା, ସେ ଯଦି ଖସିଯାଇଥାନ୍ତି, ଏଥିରେ ମୋର ଆଦୌ ଦୋଷନାହିଁ।''

''ତାହାହେଲେ କହ – ଗତ କାଲି ତୁମେ ତୁମର ପଡ଼ୋଶୀ ଦାର୍‌ତାୟାଁ ପାଖକୁ କାହିଁକି ଯାଇଥିଲ? ଆଉ ଏତେ ଦୀର୍ଘସମୟ ପର୍ଯ୍ୟନ୍ତ ସେଠାରେ

କ'ଣ ଆଲୋଚନା କରୁଥିଲ ?''

''ହଁ ଆଜ୍ଞା, ଏକଥା ସତ, ମୁଁ ତାଙ୍କ ପାଖକୁ ଯାଇଥିଲି; ମାତ୍ର ତାହା କରି ମୁଁ ନିଶ୍ଚୟ ଭୁଲ କରିଛି।''

''ତୁମେ ସେଠାକୁ କାହିଁକି ଯାଇଥିଲ ?''

''ମୋ ସ୍ତ୍ରୀଙ୍କୁ ଖୋଜି ପାଇବା ପାଇଁ ତାଙ୍କର ସାହାଯ୍ୟ ପ୍ରାର୍ଥନା କରିଥିଲି। ମୋର ମନେହେଲା, ମୋ ସ୍ତ୍ରୀଙ୍କୁ ଖୋଜି ବାହାରକରିବା ମୋର କର୍ତ୍ତବ୍ୟ। ମୁଁ ଭାବୁଛି, ତାହା କରିବାଟାହିଁ ମୋର ଭୁଲ୍। ଏଥିପାଇଁ ମୋତେ କ୍ଷମା ପ୍ରଦାନ କରନ୍ତୁ।''

''ଦାର୍‌ତାୟାଁ କି ଉତ୍ତର ଦେଲେ।''

''ମୋତେ ସାହାଯ୍ୟ କରିବା ପାଇଁ ସେ ପ୍ରତିଶ୍ରୁତି ଦେଲେ; ମାତ୍ର ଯଥାଶୀଘ୍ର ମୋ ପ୍ରତି ସେ ବିଶ୍ୱାସଘାତକତା କଲେ।''

''ବାଜେକଥା ବନ୍ଦକର। ତୁମ ଚକ୍ରାନ୍ତରେ ପଡ଼ି ତୁମର ସ୍ତ୍ରୀଙ୍କୁ ଯେଉଁ ଅଫିସରମାନେ ଗିରଫ କରିଥିଲେ, ସେମାନଙ୍କୁ ଉକ୍ତ ଦାର୍‌ତାୟାଁ ଘଉଡ଼ାଇଦେଲେ। ଆଉ ତୁମ ସ୍ତ୍ରୀଙ୍କୁ ସେ କେଉଁଠାରେ ଲୁଚାଇ ରଖିଛନ୍ତି ?''

ବିଚରା ବୋନାସିଏକ୍ସ କ'ଣ କହିବେ କିଛି ଠିକ୍ କରିପାରିଲେ ନାହିଁ। ବଡ଼ ଦୁଃଖରେ ତାଙ୍କ ତୁଣ୍ଡରୁ ବାହାରିଲା; ''ଦାର୍‌ତାୟାଁ ! ସେ ମୋ ସ୍ତ୍ରୀଙ୍କୁ ହରଣଚାଳ କରି ନେଇଛନ୍ତି ? ହାୟ !''

''ସୌଭାଗ୍ୟବଶତଃ ଦାର୍‌ତାୟାଁ ବନ୍ଦୀହୋଇଛନ୍ତି। ମୁଁ ତାଙ୍କୁ ବର୍ତ୍ତମାନ ଏଠାକୁ ଆଣିବି।''

ଅଫିସର ରକ୍ଷୀମାନଙ୍କୁ ଆଦେଶ ଦେଲେ, ''ଏଠାକୁ ଦାର୍‌ତାୟାଁଙ୍କୁ ଆଣ !''

ଆଥସ୍‌ଙ୍କୁ ଧରି ଦୁଇଜଣ ରକ୍ଷୀ ସେଠାରେ ପ୍ରବେଶ କଲେ। ବୋନାସିଏକ୍ସ ଉତ୍ତେଜିତ ସ୍ୱରରେ କହିଲେ, ''କିନ୍ତୁ ଏ ତ ଦାର୍‌ତାୟାଁ ନୁହନ୍ତି।''

''କ'ଣ, ସେ ଦାର୍‌ତାୟାଁ ନୁହନ୍ତି ?'' ସେ ତାଙ୍କ କାନକୁ ବିଶ୍ୱାସ କରିପାରିଲେ ନାହିଁ। ବୋନାସିଏକ୍ସ ଉତ୍ତର ଦେଲେ, ''ଏହି ବ୍ୟକ୍ତି କୌଣସି ପ୍ରକାରେ ମଧ ତାଙ୍କ ପରି ନୁହନ୍ତି।''

''ତାହାହେଲେ ଏହି ଭଦ୍ରବ୍ୟକ୍ତିଙ୍କ ନାମ କ'ଣ ?''

''ତାହା ମଧ ମୁଁ କହିପାରିବିନାହିଁ। ମୁଁ ତାଙ୍କୁ ଆଦୌ ଚିହ୍ନେ ନାହିଁ।''

''କ'ଣ ହେଲା, ତୁମେ ତାଙ୍କୁ ଜାଣ ନାହିଁ ?'' ସେତେବେଳକୁ ଅଫିସରଜଣକ ଆଉ ନିଜ ଆୟତ୍ତରେ ନଥିଲେ।

"ଆଦୌ ନୁହେଁ।"

"ଏହା ପୂର୍ବରୁ ତୁମେ ତାଙ୍କୁ କେଉଁଠି ଦେଖିଥିଲ କି ?"

"ହଁ, ମୁଁ ତାଙ୍କୁ ଦେଖିଛି; ମାତ୍ର ତାଙ୍କ ସହିତ ମୋର ସାକ୍ଷାତ୍ ବା କଥାବାର୍ତ୍ତା ହୋଇନାହିଁ।"

ଅଫିସର ଆଥସ୍‌ଙ୍କ ଆଡ଼େ ବୁଲିପଡ଼ି ପଚାରିଲେ, "ତୁମର ନାମ କ'ଣ ?"

ଆଥସ୍ ଉତ୍ତର ଦେଲେ, "ଆଥସ୍।" ଏତେବେଳକୁ ବୋନାସିଏକ୍‌ସଙ୍କ ମୁଣ୍ଡ ବିଗିଡ଼ିଗଲାଣି। ସେ କହିଲେ, "ଏହା ତ କୌଣସି ଲୋକର ନାମ ନୁହେଁ, ଏହା ଏକ ପର୍ବତର ନାମ।" ଆଥସ୍ କହିଲେ, "ତାହାହିଁ ମୋର ନାମ।" ଅଫିସର ପଚାରିଲେ, "କିନ୍ତୁ ତୁମେ କହିଥିଲ ଯେ ତୁମ ନାମ ଏମ୍. ଡି. ଦାର୍‌ତାୟାଁ।"

"ମୁଁ କହିଥିଲି ?"

"ହଁ– ହଁ– ତୁମେ !"

"ଆପଣଙ୍କର ଜଣେ ରକ୍ଷୀ ମୋତେ ପଚାରିଲେ – 'ଆପଣ ଦାର୍‌ତାୟାଁ ?' ମୁଁ ଉତ୍ତରଦେଇଥିଲି – 'ଆପଣମାନେ ଯାହା ଭାବୁଛନ୍ତି।' ରକ୍ଷୀମାନେ ଏହା ନିଶ୍ଚିତ ବୋଲି ଉତ୍ତର ଦେଇଥିଲେ। ତେଣୁ ମୋର ପ୍ରତିବାଦ କରିବାର କିଛି ଆବଶ୍ୟକତା ନଥିଲା। ତାହା କରିଥିଲେ ମୁଁ ଭୁଲକରିଥା'ନ୍ତି।"

"ଆଜ୍ଞା, ଆପଣ ଆଇନରକ୍ଷକମାନଙ୍କୁ ଅପମାନିତ କରିଛନ୍ତି।"

ଆଥସ୍ ଶାନ୍ତ ଅଥଚ ଦୃଢ଼ ଗଳାରେ ଉତ୍ତର ଦେଲେ, "କେବେ ନୁହେଁ।" ଅଫିସର କ୍ରୋଧରେ ଟେବୁଲ ବାଡ଼େଇ କହିଲେ, "ତୁମେ କିନ୍ତୁ ଦାର୍‌ତାୟାଁ !" ଆଥସ୍ ଟିକିଏ ହସି କହିଲେ, "ସେଇ ତ ! ଆପଣ ନିଜେ ପୁଣି ଭୁଲ୍‌କରି ସେହି କଥା କହୁଛନ୍ତି।"

ବୋନାସିଏକ୍‌ସ କହିଲେ, "ଏ ଦାର୍‌ତାୟାଁ ନୁହନ୍ତି– ଏହା ସତ। ସେ ମୋ ଘରେ ଭଡ଼ାରେ ରହନ୍ତି; ମାତ୍ର ଘରଭଡ଼ା କେବେ ଦେଇନାହାନ୍ତି। ଏହି କାରଣଯୋଗୁଁ ମୁଁ ତାଙ୍କୁ ଯେଉଁଠି ଦେଖିଲେ ମଧ୍ୟ ଚିହ୍ନିପାରିବି। ଦାର୍‌ତାୟାଁ ଏହାଙ୍କ ଅପେକ୍ଷା ବହୁତ ପିଲା। ସେ ଏସାର୍ଟସଙ୍କ ରକ୍ଷିଦଳରେ କାମ କରନ୍ତି; ମାତ୍ର ଏ ଭଦ୍ରବ୍ୟକ୍ତି ଟ୍ରିଭିଲ୍‌ଙ୍କ ମସ୍‌କେଟିଅର୍‌ମାନଙ୍କ ମଧ୍ୟରୁ ଜଣେ। ତାଙ୍କ ପୋଷାକ ପ୍ରତି ଦୃଷ୍ଟି ଦିଅନ୍ତୁ ଆଜ୍ଞା !"

ଅଫିସର ନିଜକୁ ନିଜେ କହିଲାପରି ଜଣାଗଲା, "ହୁଁ, ତାହା ଅନ୍ତତଃ ସତ ଜଣାଯାଉଛି।" ସେତିକିବେଳକୁ ଦରଜା ଖୋଲିଗଲା ଏବଂ ଜଣେ

ପତ୍ରବାହକ ତାଙ୍କୁ ଚିଠିଖଣ୍ଡିଏ ଦେଇଗଲା। ଅଫିସର ଚିଠିଖଣ୍ଡିକ ପଢ଼ି କହିଲେ, ''ହତଭାଗିନୀ – ହାୟ।''

ବୋନାସିଏକ୍ସ ପଚାରିଲେ, ''ସେଥିରେ କ'ଣ ଅଛି ଆଜ୍ଞା? ମୋ ସ୍ତ୍ରୀ ବିଷୟରେ କିଛି ନୁହେଁ ତ?''

''ମୋର ମନେହୁଏ ତାହାହିଁ ହେବ। ତୁମ କଥା ବେଢ଼କୁ ବେଢ଼ ଜଟିଳ ହେଉଛି।''

''ମୁଁ ବନ୍ଦିଶାଳାରେ ଥିବା ସମୟରେ ମୋ ସ୍ତ୍ରୀ କ'ଣ କଲା, ସେଥିପାଇଁ ମୁଁ କେମିତି ଦାୟୀ?''

''କେମିତି? ବର୍ତ୍ତମାନ ତୁମ ସ୍ତ୍ରୀ ଯାହା କରୁଛନ୍ତି, ଏହା ପୂର୍ବ ଚକ୍ରାନ୍ତର ଅଂଶ ମାତ୍ର।''

''ମୁଁ ଶପଥ କରି କହିଛି ଯେ, ମୋ ସ୍ତ୍ରୀ ଯାହା କିଛି କରିଛନ୍ତି ବା କରୁଛନ୍ତି, ମୁଁ ତାହା କିଛି ଜାଣେନାହିଁ। ମୁଁ ନିର୍ଦ୍ଦୋଷ। ମୁଁ–''

ଆଥସ୍ ଶାନ୍ତଭାବରେ ଅଫିସରଙ୍କୁ କହିଲେ, ''ଟିକିଏ ଶୁଣନ୍ତୁ। ମୋଠାରେ ଯଦି ଆପଣଙ୍କର ଆଉ କିଛି କାର୍ଯ୍ୟ ନଥାଏ, ତାହାହେଲେ ମୋତେ ଅନ୍ୟତ୍ର ପଠାଇଦିଅନ୍ତୁ।''

ଅଫିସର ଉକ୍ତ ଦୁଇଜଣ ବନ୍ଦୀଙ୍କୁ ନେଇଯିବାପାଇଁ ରକ୍ଷୀମାନଙ୍କୁ ଆଦେଶ ଦେଲେ। ଆଥସ୍ ଯେଉଁଠାରେ ଠିଆହୋଇଥିଲେ, ସେଠାରୁ ତିଳେମାତ୍ର ନ ଘୁଞ୍ଚି ଶାନ୍ତଭାବରେ କହିଲେ, ''ଦାର୍ତ୍ତାୟାଁଙ୍କୁ ଯଦି ଆପଣ ଖୋଜୁଥା'ନ୍ତି, ତାହାହେଲେ ମୋତେ ଅଟକାଇ ରଖି କିଛି ଲାଭ ନାହିଁ।''

ଅଫିସରଜଣକ ରକ୍ଷୀମାନଙ୍କ ପ୍ରତି ଗର୍ଜିଉଠିଲେ, ''ଏମାନଙ୍କୁ ଫେରାଇନିଅ। ସେମାନେ ଯେମିତି ଆଉ ପଦେ କଥା ନ କହନ୍ତି। ଏ ସବୁ ଶାସନସଂକ୍ରାନ୍ତୀୟ କାର୍ଯ୍ୟ।'' ରକ୍ଷୀମାନେ ସଙ୍ଗେ ସଙ୍ଗେ ଆଦେଶ ପାଳନ କଲେ।

ବନ୍ଦିଶାଳାର ଅଫିସର ଆଥସ୍‌ଙ୍କୁ ଆଉ ଅଧିକ ପ୍ରଶ୍ନ ମଧ ପଚାରିଲେ। ଆଥସ୍ ଶାନ୍ତଭାବରେ ସେମାନଙ୍କୁ ବୁଝାଇଲେ ଯେ ସେ ବୋନାସିଏକ୍ସ ବା ତାଙ୍କ ସ୍ତ୍ରୀଙ୍କୁ ଆଦୌ ଜାଣନ୍ତି ନାହିଁ। ଅଫିସର କାର୍ଡିନାଲ୍‌ଙ୍କ ଦଳଭୁକ୍ତ ଥିବାଯୋଗୁଁ ମସ୍‌କେଟିଅର୍ ଆଥସ୍‌ଙ୍କ ବିରୁଦ୍ଧରେ ପ୍ରମାଣ ସଂଗ୍ରହ କରିବାକୁ ଅତ୍ୟନ୍ତ ବ୍ୟଗ୍ର ଥିଲେ; କିନ୍ତୁ ଆଥସ୍‌ଙ୍କଠାରୁ ଟ୍ରିଭିଲ୍ ଓ ଅନ୍ୟ ବିଶିଷ୍ଟ ବ୍ୟକ୍ତିଙ୍କ ନାମ ଶୁଣି ତାଙ୍କୁ ଅଧିକ ସମୟ ବନ୍ଦୀକରି ରଖିବାକୁ ସାହସ କଲେ ନାହିଁ; ତଥାପି ତାଙ୍କୁ ମୁକ୍ତି ଦେବାର ବି ଉପାୟ ନ ଥିଲା। ତେଣୁ ଜେଲ୍ ଗଭର୍ଣ୍ଣରଙ୍କୁ ଗୋଟିଏ ବିବରଣୀ ପଠାଇ ତାଙ୍କ ନିର୍ଦ୍ଦେଶ ଅପେକ୍ଷାରେ ରହିଲେ।

# ନିର୍ବୋଧ ବୋନାସିଏକ୍ସ

ସେଦିନସାରା ବୋନାସିଏକ୍ସ ନିଜର ମୁଣ୍ଡଟିକୁ ଦୁଇ ହାତରେ ଚିପିଧରି ତଳକୁ ମୁହଁ ପୋତି ବସିରହିଥାନ୍ତି । ସେ ସାମାନ୍ୟ ମାତ୍ର ଶବ୍ଦରେ ଚମକି ପଡୁଥା'ନ୍ତି । ସନ୍ଧ୍ୟା ନଅଟାରେ ତାଙ୍କ କୋଠରିର ଦରଜା ଖୋଲି ଜଣେ ରକ୍ଷୀ କହିଲା, ''ମୋ ପଛେ ପଛେ ଆସ ।'' ବୋନାସିଏକ୍ସ ଭୟରେ ଚିତ୍କାରକରି କହିଲେ, ''ତୁମ ପଛେ ପଛେ ଯିବି! ପୁଣି ରାତିର ଏହି ପ୍ରହରରେ ! ହେ ଭଗବାନ ! ମୋ'କଥା ଏଇ ଥର ସରିଲା ।''

କୌଣସି ବାଧା ନ ଦେଇ ସେ ରକ୍ଷୀ ପଛରେ ଚାଲିଲେ । କୁଆଡ଼େ ଯେ ସେ ଯାଉଛନ୍ତି, ଜାଣିପାରୁ ନଥାନ୍ତି । ସେ ଅର୍ଦ୍ଧଚେତନ ଅବସ୍ଥାରେ ଆସି ଗୋଟିଏ ଘୋଡ଼ାଗାଡ଼ି ପାଖରେ ପହଞ୍ଚିଲେ । ଗାଡ଼ି ଭିତରେ ପଶିବାକୁ ତାଙ୍କୁ ନିର୍ଦ୍ଦେଶ ଦିଆଗଲା । ସେ ଭାବିଲେ, ଫାଶୀ ଦେବାକୁ ତାଙ୍କୁ ନିଆହେଉଛି । ସେ ବିଚଳିତ ହୋଇ ଗୁମୁରିଉଠିଲେ ଓ ସଙ୍ଗେ ସଙ୍ଗେ ତାଙ୍କର ସଂଜ୍ଞା ଲୋପ ହୋଇଗଲା । ଗାଡ଼ିଟି କିଛି ସମୟ ପରେ ଏକ ବିରାଟ ପ୍ରାସାଦର ପଶ୍ଚାତ୍‌ଭାଗରେ ଥିବା ଗୋଟିଏ କ୍ଷୁଦ୍ର ଦ୍ୱାର ସମ୍ମୁଖରେ ରହିଲା । ସଂକେତ ନିର୍ଦ୍ଦେଶ ପରେ ଦରଜାଟି ଧୀରଭାବରେ ଖୋଲିଗଲା ଏବଂ ଦୁଇଜଣ ରକ୍ଷୀ ଆସି ବୋନାସିଏକ୍ସଙ୍କୁ ଭିତରକୁ ନେଇଗଲେ । ଦୁଇପାଖରେ ଜଣେ ଜଣେ ରହି, ତାହାଙ୍କୁ ଅଧା ଟେକି ଓ ଅଧା ଚଲାଇ କେତେକ ଶିଡ଼ି ପାହାଚ ଉପରେ ନେଇ ଗୋଟିଏ ବିରାଟ ହଲ୍ ମଧ୍ୟରେ ଛାଡ଼ିଦେଲେ ।

ସତେ ଅବା ବୋନାସିଏକ୍ସ ଏକ ସ୍ୱପ୍ନ-ରାଜ୍ୟରେ ଅଛନ୍ତି— ଉକ୍ତ ରକ୍ଷୀ ଦୁଇଜଣ ତାଙ୍କୁ ସେପରି ମନେହେଉଥିଲେ । ସେ ଶବ୍ଦ ଶୁଣୁଥିଲେ; ମାତ୍ର ସେଥିରୁ କିଛି ବୁଝିପାରୁ ନ ଥିଲେ । ତାଙ୍କର ମନେହେଉଥିଲା, ସେ ଫାଶୀ ପାଇଯିବେ ଅଥଚ ତାର ପ୍ରତିବାଦ କରିବାକୁ ବା ନିଜର ଭୁଲ୍ ପାଇଁ କ୍ଷମା ମାଗିବାକୁ ବି ତାଙ୍କର ଶକ୍ତି ନାହିଁ । କ୍ରମେ ତାଙ୍କର ଜ୍ଞାନ ଫେରିଆସିଲା ଏବଂ ଦେଖିଲେ ଯେ ସେ ଗୋଟିଏ ସୁବୃହତ୍, ସୁନ୍ଦର ଭାବରେ ସଜ୍ଜିତ ହଲ୍‌ରେ ବସିଛନ୍ତି । ସେ ଭାବିଲେ, ତାଙ୍କର ଏତେ ବେଶୀ ଭୟ କରିବାର ନଥିଲା । ସେ ଦୁଇହାତରେ ଭରାଦେଇ ଠିଆହୋଇପଡ଼ିଲେ । ଠିକ୍ ସେତିକିବେଳେ ପାଖ କୋଠରିରୁ ଜଣେ ଭଦ୍ରବ୍ୟକ୍ତି ବାହାରିଆସି ତାଙ୍କ ସହିତ କଥାବାର୍ତ୍ତା ଆରମ୍ଭ କରିଦେଲେ । ସେ ବେଶ୍ ଭଦ୍ରଭାବରେ

ପଚାରିଲେ, ''ଆପଣଙ୍କ ନାମ କ'ଣ ବୋନାସିଏକ୍ସ ?'' ବୋନାସିଏକ୍ସ ଅନେଇ ଅନେଇ ଧୀରେ କହିଲେ, ''ହଁ ଆଜ୍ଞା, ହଁ ମୋର ପ୍ରଭୁ ! ମୁଁ ଆପଣଙ୍କ ଆଜ୍ଞାବହ ।''

ଭଦ୍ରବ୍ୟକ୍ତିଙ୍କ ନିର୍ଦ୍ଦେଶରେ ବୋନାସିଏକ୍ସ ଭୂଷିତ ପଦରେ ସୁସଜ୍ଜିତ ଏକ ଅଫିସ ଭିତରକୁ ପ୍ରବେଶ କଲେ । ସେହି କୋଠରିର ଅଗ୍ନିକୁଣ୍ଡ ପାଖରେ କାର୍ଡିନାଲ୍ ରିଚିଲିଉ ଛିଡ଼ାହୋଇଥିଲେ । ତାଙ୍କ ପୋଷାକରେ ଏପରି କିଛି ବିଶେଷତା ନଥିଲା, ଯେଉଁଥିରୁ ଜାଣିହେବ ସେ ଜଣେ ଉଚ୍ଚପଦବୀଧାରୀ ଅଫିସର । ହୁଏତ ତାଙ୍କୁ ଆଗରୁ ଯେ ଚିହ୍ନିନଥିବ, ସେ କିଏ ବୋଲି ଆଦୌ ଜାଣିପାରିବ ନାହିଁ ।

ପରିଚାରକ କାର୍ଡିନାଲ୍‌ଙ୍କୁ କେତେ ଖଣ୍ଡ କାଗଜ ବଢ଼ାଇଦେଇ ସେ କୋଠରି ଛାଡ଼ି ଚାଲିଗଲା । କାର୍ଡିନାଲ୍ ଉକ୍ତ କାଗଜ ଉପରୁ ବାରମ୍ବାର ମୁଣ୍ଡ ଟେକି ବୋନାସିଏକ୍ସଙ୍କ ଆଡ଼େ ତୀକ୍ଷ୍ଣ ଦୃଷ୍ଟିନିକ୍ଷେପ କରୁଥା'ନ୍ତି । ଶେଷରେ କାର୍ଡିନାଲ୍ କହିଲେ, ''ତୁମେ ରାଜଦ୍ରୋହ ଅଭିଯୋଗରେ ଅଭିଯୁକ୍ତ ।'' ବୋନାସିଏକ୍ସ କହିଲେ, ''ମୁଁ ପୁଣି ଥରେ ଶପଥ କରି କହୁଛି ଯେ, ମୁଁ ନିର୍ଦ୍ଦୋଷ ।'' ପରିଚାରକ ଯେପରି ଭାବରେ କାର୍ଡିନାଲ୍‌ଙ୍କୁ ସମ୍ବୋଧନ କରିଥିଲା, ସେ ଠିକ୍ ସେହିପରି ସମ୍ବୋଧନ କରିବାକୁ ଆରମ୍ଭ କରିଥିଲେ ।

''ତୁମେ ଓ ତୁମର ସ୍ତ୍ରୀ ମାଡାମ୍ ଚିଭରୁଜ ଡି. ବକିଙ୍ଗ୍‌ହାମ୍ ଡ୍ୟୁକ୍‌ଙ୍କ ସହ ମିଶି ଏହି ଚକ୍ରାନ୍ତ କରିଛ ।''

''ପ୍ରଭୁ, ଏହି ନାମ ସବୁ ମୋର ସ୍ତ୍ରୀ କହୁଥିବାର ମୁଁ ଶୁଣିଛି ।''

''କେବେ ?''

''ସେ କହୁଥିଲେ ଯେ, କାର୍ଡିନାଲ୍ ରିଚିଲିଉ ବକିଙ୍ଗ୍‌ହାମ୍ ଡ୍ୟୁକ୍‌ଙ୍କୁ କୌଶଳକରି ପ୍ୟାରିସ୍‌କୁ ନେଇଆସିଛନ୍ତି । ତାଙ୍କୁ ଓ ତାଙ୍କ ସହିତ ରାଣୀଙ୍କୁ ସେ ସର୍ବସ୍ୱାନ୍ତ କରିବେ ।''

କାର୍ଡିନାଲ୍ ସାଙ୍ଗେ ସାଙ୍ଗେ ପଚାରିଲେ, ''ସେ ଏପରି କହୁଥିଲେ ?''

''ହଁ ପ୍ରଭୁ ! କିନ୍ତୁ ମୁଁ ତାଙ୍କୁ ଏପରି ଭାବିବା ଭୁଲ୍ ବୋଲି କହିଲି ଓ କାର୍ଡିନାଲ୍ ଏସବୁ କରିବାକୁ ଅସମର୍ଥ –''

କାର୍ଡିନାଲ୍ ତାଙ୍କୁ ବାଧାଦେଇ କହିଲେ, ''ଚୁପ୍‌କର ! ତୁମେ ଜଣେ ନିର୍ବୋଧ ।''

''ପ୍ରଭୁ, ମୋ ସ୍ତ୍ରୀ ଠିକ୍ ସେହି କଥା କହିଥିଲେ ।''

''ତୁମେ ଜାଣ କି, କିଏ ତୁମ ସ୍ତ୍ରୀଙ୍କୁ ଅପହରଣ କଲା ?''

''ନା ପ୍ରଭୁ, ମୁଁ କେବଳ ସନ୍ଦେହକରୁଥିଲି; ମାତ୍ର ବାଷ୍ଟାଇଲ୍‌ଠାରେ ଅଫିସର ଯେପରି ଭାବରେ ଅସନ୍ତୁଷ୍ଟ ହେଲେ ମୋର ଆଉ କିଛି ସନ୍ଦେହ ନାହିଁ।''

''ତୁମେ ଜାଣ କି, ତୁମର ସ୍ତ୍ରୀ ଏଭିତରେ ଖସିଚାଲିଯାଇଛନ୍ତି ?''

''ଆଜି ସକାଳେ ଯେଉଁ ଭଦ୍ରବ୍ୟକ୍ତି ମୋତେ ପଚରାପଚରି କରୁଥିଲେ, ସେ ମୋତେ କହୁଥିଲେ। ଆହା, ସେ ଜଣେ ଅତି ଦୟାବାନ୍ ବ୍ୟକ୍ତି।''

ତଥାପି କାର୍ଡିନାଲ୍ ନିଜର ହସ ସମ୍ଭାଳିନେଲେ।

''ତୁମ ସ୍ତ୍ରୀଙ୍କୁ ଆଣିବାକୁ ତୁମେ ଯେତେବେଳେ ଲୋଭର୍ ରାଜପ୍ରାସାଦକୁ ଯାଅ, ତୁମେ କଣ ସିଧା ଘରକୁ ଚାଲିଆସ ?''

''ନା ତ! ରାସ୍ତାକଡ଼ରେ ଥିବା 'କେତେକ ଲୁଗାଦୋକାନୀଙ୍କ ପାଖକୁ ସେ ଯାଆନ୍ତି।''

''ସେ ଦୋକାନୀ ସବୁ କିଏ ?''

''ମୁଁ ସେମାନଙ୍କର ନାମ ଜାଣେ ନାହିଁ। ତେବେ ସେମାନଙ୍କ ମଧ୍ୟରୁ ଜଣେ ୨୫ ରୁ. ଡି. ଭଗିରାଡ଼ଠାରେ ଓ ଅନ୍ୟ ଜଣେ ୭୫ ରୁ. ଡି. ଲା. ହାର୍ପଠାରେ ବାସକରନ୍ତି।''

''ତୁମେ କ'ଣ ତାଙ୍କ ସହିତ ସେ ସ୍ଥାନକୁ ଯାଇଥିଲ ?''

''ନା ପ୍ରଭୁ, ସେ ମୋତେ ଦ୍ୱାର ନିକଟରେ ଅପେକ୍ଷା କରିବାକୁ କହନ୍ତି ଓ ମୁଁ ମଧ ଅପେକ୍ଷା କରିଥାଏ।''

''ତୁମେ ଜଣେ ବେଶ୍ ଆଜ୍ଞାବହ ସ୍ୱାମୀ – ବନ୍ଧୁ ବୋନାସିଏକ୍ସ।''

ବୋନାସିଏକ୍ସ ମନକୁମନ ଭାବିଲେ – 'ଆଃ, ସେ କ'ଣ ମୋତେ ବନ୍ଧୁ ବୋନାସିଏକ୍ସ କହୁଛନ୍ତି ? ଜଣାଯାଏ, କଥାଟା ଭଲଆଡ଼େ ଯାଉଛି।'

କାର୍ଡିନାଲ୍ ଡେକ୍ସ ଉପରେ ଥିବା ଗୋଟିଏ ରୁପାର ଘଣ୍ଟି ବଜାଇବାରୁ ତାଙ୍କର ଭୃତ୍ୟ ସଙ୍ଗେ ସଙ୍ଗେ ପ୍ରବେଶ କଲା ଓ ସେ ତାକୁ ଆଦେଶ ଦେଲେ – ''ତୁମେ କାଉଣ୍ଟ ଡି. ରୋଚ୍‌ଫୋର୍ଟଙ୍କ ପାଖକୁ ଯାଅ; ଆଉ କହିବ ଯେ, ମୋର ତାଙ୍କ ସହିତ କାମ ଅଛି।''

''ସେ କାର୍ଡିନାଲ୍‌ଙ୍କ ସହିତ ସାକ୍ଷାତ୍ ପାଇଁ ଏହି ପାଖ କୋଠରିରେ ଅପେକ୍ଷା କରିଛନ୍ତି।''

ବୋନାସିଏକ୍ସଙ୍କ ଚକ୍ଷୁଯୁଗଳ ଚା' ଥାଳିଆ ଭଳି ଆଶ୍ଚର୍ଯ୍ୟରେ ବିସ୍ତାରିତ ହେଲା। ସେ କହିଲେ, ''ହଜୁର ଏମିନେନ୍ସ।'' ଦରଜା ଖୋଲିଗଲା ଓ ଗୃହମଧ୍ୟକୁ କାଉଣ୍ଟ ଡି. ରୋଚଫୋର୍ଟ ପ୍ରବେଶ କଲେ। ବୋନାସିଏକ୍ସ ଚିତ୍କାର କଲେ, ''ଏ ତ ସେହି !''

କାର୍ଡିନାଲ୍ ଟିକିଏ ଇତସ୍ତତଃ ହୋଇ କହିଲେ, ''ସେ, କିଏ ?''

''କାହିଁକି, ଯେଉଁ ଲୋକ ମୋ ସ୍ତ୍ରୀଙ୍କୁ ଟେକିନେଇଥିଲେ !'' କାର୍ଡିନାଲ୍ ସାଙ୍ଗେ ସାଙ୍ଗେ ଘଣ୍ଟି ବଜାଇଲେ । ପରିଚାରକ ପହଞ୍ଚିବା ସଙ୍ଗେ ସଙ୍ଗେ କାର୍ଡିନାଲ୍ ତାଙ୍କୁ କହିଲେ, ''ବର୍ତ୍ତମାନ ଏହି ବ୍ୟକ୍ତିଙ୍କୁ ତାଙ୍କ ରକ୍ଷୀମାନଙ୍କ ପାଖକୁ ନେଇଯାଅ । ମୁଁ ତାଙ୍କୁ ପୁଣି ଥରେ ଡକାଇବା ପର୍ଯ୍ୟନ୍ତ ସେ ସେଠାରେ ଥା'ନ୍ତୁ ।''

ବୋନାସିଏକ୍ସ ପୁଣି ଚିତ୍କାର କଲେ, ''ନା ପ୍ରଭୁ, ହଜୁର ଏମିନେନ୍ସ ! ଏ ସେ ନୁହନ୍ତି । ମୋର ଭୁଲ୍‌ହୋଇଯାଇଛି । ଏ ତ ସଂପୂର୍ଣ୍ଣ ଆଉ ଜଣେ ବ୍ୟକ୍ତି । ପ୍ରଭୁ, ଏ ତ ଜଣେ ଅତି ଭଦ୍ରଲୋକ !''

କାର୍ଡିନାଲ୍ ଅଧୈର୍ଯ୍ୟସହକାରେ କହିଲେ, ''ଏ ନିର୍ବୋଧକୁ ଶୀଘ୍ର ଏଠାରୁ ନେଇଯାଅ ।''

## କାର୍ଡିନାଲ୍‌ଙ୍କ ଦ୍ୱିତୀୟ ଜାଲ

କବାଟ ବନ୍ଦ ହେଲା ଏବଂ ତା'ପରେ ରୋଚଫୋର୍ଟ ଆରମ୍ଭ କଲେ । ସେ କହିଲେ, ''ରାଣୀ ଓ ଡ୍ୟୁକ୍‌ଙ୍କ ଭିତରେ ସାକ୍ଷାତ୍ ଘଟିଛି ।''

''କେଉଁଠାରେ ?''

''ଲୋଭର୍ ପ୍ରାସାଦରେ ।''

''କିଏ ଆପଣଙ୍କୁ କହିଲା ?''

''ରାଣୀଙ୍କର ଜଣେ ସହଚରୀ ମାଡାମ୍ ଡି. ଲାନୋୟା । ଆପଣ ଜାଣନ୍ତି, ସେ ଆପଣଙ୍କର ଏକାନ୍ତ ଅନୁଗତା ।''

''କିପରି ବ୍ୟବସ୍ଥା କରାଯାଇଥିଲା ?''

''ଗତ ରାତି ପ୍ରାୟ ସାଢ଼େ ବାରଟା ସମୟରେ ରାଣୀ ତାଙ୍କର ସହଚରୀମାନଙ୍କ ସହିତ ବସି ଗପସପ କରୁଥିବା ସମୟରେ ତାଙ୍କ ବ୍ୟକ୍ତିଗତ କୋଠରି ମଧ୍ୟକୁ ଜଣେ ପରିଚାରିକା ପ୍ରବେଶ କଲା ଓ ରାଣୀଙ୍କୁ ଖଣ୍ଡିଏ ଚଉଡ଼ା ରୁମାଲ ବଢ଼ାଇଦେଲା ।''

''ତା'ପରେ ?''

''ରାଣୀଙ୍କ ହାତ ଥରିବାକୁ ଲାଗିଲା; ସେ ଶେତା ପଡ଼ିଗଲେ । ତାଙ୍କର ସ୍ପେନୀୟ ପରିଚାରିକା ସହ ସେ କୋଠରିର କବାଟ ଦରଜା ଦେଇ ବାହାରକୁ ଚାଲିଗଲେ ।''

''ସେ କେତେ ସମୟ ଅନୁପସ୍ଥିତ ଥିଲେ ?''

''ପ୍ରାୟ ଅଧଘଣ୍ଟାଏ ହେବ; କିନ୍ତୁ ସେହି ସମୟ ମଧ୍ୟରେ ସେ ଗୋଟିଏ ଛୋଟ ରୁପାର ବାକ୍ସ ନେବାପାଇଁ ଥରେ ଆସିଥିଲେ।''

କାର୍ଡିନାଲ୍ ବିଶେଷ ବ୍ୟଗ୍ର ହୋଇ ପଚାରିଲେ, ''ଆଚ୍ଛା, ଯେତେବେଳେ ରାଣୀ ଫେରିଲେ, ସେ କଣ ସେ ରୁପା ବାକ୍ସଟି ସାଙ୍ଗରେ ଫେରାଇଆଣିଥିଲେ ?''

''ନା ପ୍ରଭୁ !''

''ତାହା ଏକ ଅଙ୍ଗରାଗ ବାକ୍ସ। ସେଥିରେ ବାରଗୋଟି ହୀରକ ଥିଲା। ଏହିଟିକୁ ରାଜା ତାଙ୍କ ଜନ୍ମଦିନରେ ରାଣୀଙ୍କୁ ଅଳ୍ପ ଦିନତଳେ ଉପହାର ଦେଇଥିଲେ।''

''ରାଣୀ ତାଙ୍କ ବଣିଆ ପାଖକୁ ସେଗୁଡ଼ିକ ପରିଷ୍କାର କରିବାପାଇଁ ପଠାଇପାରିଥାନ୍ତି ?''

''ଆଜି ସକାଳେ ମୁଁ ସେ ବଣିଆକୁ ମଧ୍ୟ ଭେଟିଥିଲି। ସେ ରାଣୀଙ୍କଠାରୁ ସେପରି କୌଣସି ଅଳଙ୍କାର ପାଇଥିବା ମନାକଲା।''

''ଡଚେସ୍ ଡି. ଚେଭ୍ରେଉଜ୍ ଓ ବକିଂହାମ୍ ଡ୍ୟୁକ୍ ପ୍ୟାରିସ୍‌ର କେଉଁଠାରେ ଲୁଚିକରି ଥିଲେ, ତୁମେ ଜାଣ କି ?''

''ନା, ପ୍ରଭୁ ! ମୋର ଲୋକମାନେ ଏପର୍ଯ୍ୟନ୍ତ ସନ୍ଧାନ ପାଇନାହାନ୍ତି।''

''ମୁଁ ଭାବୁଛି, ମୁଁ ସେ ସ୍ଥାନ ଜାଣେ। ଖୁବ୍ ସମ୍ଭବ ସେମାନଙ୍କ ମଧ୍ୟରୁ ଜଣେ ୨୫ ରୁ. ଡି. ଭଗିରାଡ଼ଠାରେ ଓ ଅନ୍ୟ ଜଣେ ୭୫ ରୁ. ଡି. ଲା. ହାର୍ପଠାରେ ଲୁଚିରହିଥିଲେ। ମୋର ଦଶଜଣ ରକ୍ଷୀଙ୍କୁ ନେଇ ଉକ୍ତ ଦୁଇ ସ୍ଥାନ ତଦାରଖ କର। ଯଦି ପକ୍ଷୀ ଦୁଇଟି ଉଡ଼ିଯାଇନଥାନ୍ତି, ଡ୍ୟୁକ୍ ଓ ଡଚେସ୍ ଦୁହିଁଙ୍କୁ ଗିରଫ କର।''

ତାଙ୍କର ପ୍ରଧାନ ପ୍ରତିନିଧି ରୋଚଫୋର୍ଟ ଚାଲିଯିବା ପରେ କାର୍ଡିନାଲ୍ କିଛି ସମୟ ବସିରହି ଯାହା ସବୁ ଘଟଣା ଘଟିଯାଇଛି, ସେ ବିଷୟ ଚିନ୍ତା କଲେ। ତା'ପରେ ବୋନାସିଏକ୍ସଙ୍କୁ ସେଠାକୁ ଆଣିବା ପାଇଁ ଆଦେଶ ଦେଲେ। କାର୍ଡିନାଲ୍ ବୋନାସିଏକ୍ସଙ୍କୁ କହିଲେ, ''ମୋର ମନେହୁଏ, ତୁମକୁ ସନ୍ଦେହ କରି ଅନ୍ୟାୟରେ ବନ୍ଦୀ କରିଛନ୍ତି। ଏହି ଥଳିରେ ୩୦୦ ପିସ୍ତୋଲ ଅଛି। ଏହା ଗ୍ରହଣ କର, ଆଉ ତୁମ ପ୍ରତି କରାଯାଇଥିବା ଖରାପ ବ୍ୟବହାର ପାଇଁ ମୋତେ କ୍ଷମା କର।''

ବୋନାସିଏକ୍ସ ନିଜ କାନକୁ ବିଶ୍ୱାସ କରିପାରିଲେ ନାହିଁ। ସେ

ଅତ୍ୟନ୍ତ ବିନମ୍ରଭାବେ ଥଙ୍ଗେଇ ଥଙ୍ଗେଇ କହିଲେ, ''ମୁଁ... ମୁଁ ଆପଣଙ୍କୁ କ୍ଷମା ଦେଇପାରେ ? ପ୍ରଭୁ ! ମୋତେ ଗିରଫ କରିବାପାଇଁ ଶ୍ରୀହଜୁରଙ୍କର ପୂର୍ଣ୍ଣ କ୍ଷମତା ରହିଛି। ମୋତେ ଶ୍ରୀହଜୁର ବି କଷ୍ଟ ଦେଇପାରିବେ; ମୋତେ ଫାଶୀ ବି ଦେଇପାରିବେ। ମୁଁ ଯେ ଶ୍ରୀହଜୁରଙ୍କୁ କ୍ଷମା ଦେଇପାରେ, ଶ୍ରୀହଜୁର କେମିତି ଏହା କହୁଛନ୍ତି ?'' କାର୍ଡିନାଲ୍ ଟିକିଏ ହସି କହିଲେ, ''ମୁଁ ତାହା କରିପାରେ। ତୁମେ ଯାହା ଦେଖୁଛ, ମୁଁ ବହୁତ ଉଦାର। ତୁମେ ଏଠାରୁ ଦୁଃଖରେ ଯିବାପାଇଁ ମୁଁ ଚାହେଁ ନାହିଁ। ବନ୍ଧୁ, ମୋର ଆଶା, ଆମେ ଆଉ ଥରେ ପରସ୍ପରକୁ ଭେଟିବା।''

''ଶ୍ରୀହଜୁର ଯେତେବେଳେ ଇଚ୍ଛା କରିବେ। ମୁଁ ଶ୍ରୀହଜୁରଙ୍କ ଆଦେଶ ପ୍ରତୀକ୍ଷାରେ ରହିଛି।''

କାର୍ଡିନାଲ୍ ତାଙ୍କ କାନ୍ଧରେ ଟିକିଏ ଥାପୁଡ଼ାଇଦେଲେ ଏବଂ ତାଙ୍କୁ ଚାଲିଯିବାପାଇଁ ନିର୍ଦ୍ଦେଶ ଦେଲେ। କୋଠରି ବାହାରେ ବୋନାସିଏକ୍ସଙ୍କ ହୃଦୟ କୃତକୃତ୍ୟ ହୋଇଉଠିଲା ଏବଂ ସେ ଜିଭ ଲହଲହ କରିବାକୁ ଲାଗିଲେ। ସେ ଚିତ୍କାର କରି କହିଲେ ''କାର୍ଡିନାଲ୍ ତାଙ୍କ ନିଜ ହାତରେ ମୋ ଶରୀର ସ୍ପର୍ଶକଲେ। ଏହି ବିରାଟ ବ୍ୟକ୍ତି ମୋତେ ବନ୍ଧୁ ବୋଲି ସମ୍ବୋଧନ କଲେ। କାର୍ଡିନାଲ୍ ଦୀର୍ଘଜୀବୀ ହୁଅନ୍ତୁ।'' ଏହିପରି କାର୍ଡିନାଲ୍‌ଙ୍କର ପ୍ରଶଂସା ଗାନ କରି ସେ ନିଜ ଘରକୁ ବାହୁଡ଼ିଲେ। ମୁହଁରେ ହସ ଉକୁଟେଇ କାର୍ଡିନାଲ୍ ସବୁକଥା ଶୁଣୁଥିଲେ। ସେ ନିଜକୁ ନିଜେ କହିଲେ, ''ବେଶ୍, ସେ ଲୋକକୁ ମୁଁ ବର୍ତ୍ତମାନ ଯାହା କହିବି, ସେ ନିଶ୍ଚୟ କରିବ।''

ଅଳ୍ପ ସମୟ ପରେ କାଉଣ୍ଟ୍ ଡି. ରୋଚଫୋର୍ଟ ଫେରିଆସିଲେ। କାର୍ଡିନାଲ୍ ବ୍ୟଗ୍ରଭାବରେ ପଚାରିଲେ, ''ଖବର କ'ଣ ?'' ରୋଚଫୋର୍ଟ କହିଲେ, ''ହଜୁର ଯାହା କହୁଥିଲେ, ତାହା ସତ୍ୟ। ହଜୁର ଯେଉଁ ଦୁଇଟି ଗୃହକଥା କହିଲେ, ସେଠାରେ ଜଣେ ଉଚ୍ଚବଂଶୀୟା ରମଣୀ ଓ ଜଣେ ଭଦ୍ରବ୍ୟକ୍ତି ବାସକରୁଥିଲେ। ଗତ ରାତିରେ ଉକ୍ତ ରମଣୀ ଓ ଆଜି ପ୍ରଭାତରେ ଉକ୍ତ ଭଦ୍ରବ୍ୟକ୍ତି ସେ ସ୍ଥାନ ଛାଡ଼ି ଚାଲିଯାଇଛନ୍ତି।''

କାର୍ଡିନାଲ୍ କହିଲେ– ''ମୁଁ ଠିକ୍ କହିଥିଲି। ସେମାନଙ୍କ ପିଛା ଧରିବା ବିଳମ୍ବ ହୋଇଗଲା। ତଥାପି ବର୍ତ୍ତମାନ ରାସ୍ତା ଉପରେ ଓ ଡ୍ୟୁକ୍ ନିଶ୍ଚୟ ଇଂଲଣ୍ଡ ଯିବା ରାସ୍ତାରେ। ଆମକୁ ଲଣ୍ଡନରେ ଉକ୍ତ ହୀରକଗୁଡ଼ିକର ସନ୍ଧାନ ନେବାକୁ ହେବ।''

''ଶ୍ରୀହଜୁର ବର୍ତ୍ତମାନ କଣ କରିବାକୁ କହୁଛନ୍ତି।''

''ଯାହା ଘଟିଯାଇଛି ସେ ବିଷୟରେ କେହି ଯେପରି କିଛି ନ ଜାଣନ୍ତି। ବିଶେଷତଃ ରାଣୀ ଯେପରି ନ ଜାଣନ୍ତି ଯେ ଆମେ ତାଙ୍କର ଗୁପ୍ତକଥାଟି ଜାଣୁ ବୋଲି।''

''ବୋନାସିଏକ୍ସ ?''

କାର୍ଡିନାଲ୍ ଟିକିଏ ହସି ଉତ୍ତର ଦେଲେ, ''ତାକୁ ମୁଁ ଗୋଟିଏ ମୁଦ୍ରାପୂର୍ଣ୍ଣ ଥଳି ଦେଇ ବିଦାୟ ଦେଇଛି। ସେ ବର୍ତ୍ତମାନ ମୋର ପ୍ରଶଂସା ଗାନକରିଚାଲିଛି। ସେ ତା ନିଜ ସ୍ତ୍ରୀପ୍ରତି ମଧ୍ୟ ଗୁପ୍ତଚର କାର୍ଯ୍ୟ କରିବ। ତା ସହିତ ସମ୍ପର୍କ ରଖିଥାଅ। ମୋ ପାଖକୁ ଭିଟ୍ରେକୁ ପଠାଅ।''

କାର୍ଡିନାଲ୍ ତାଙ୍କ ଡେକସ୍ ପାଖରେ ବସିଥାନ୍ତି। କେତେକ ମୁହୂର୍ତ୍ତ ଚିନ୍ତା କରିବା ପରେ ସେ ନିମ୍ନଲିଖିତ ପତ୍ରଖଣ୍ଡି ଲେଖିଲେ; ମାତ୍ର ତହିଁରେ ଦସ୍ତଖତ ନକରି ଛାଡ଼ିଦେଲେ :

''ମିଲେଡ଼ି, ବକିଙ୍ଗହାମ୍ ଡ୍ୟୁକ୍ ଯେଉଁ ବଲ୍‌ନୃତ୍ୟରେ ଥିବେ, ତୁମେ ସେଠାରେ ଉପସ୍ଥିତ ରହିବ। ତାଙ୍କ ଜାକେଟ୍ ଉପରେ ସେ ବାରଗୋଟି ହୀରକଖଚିତ ଗୋଟିଏ ଅଳଙ୍କାର ପରିଧାନ କରିଥିବେ। ତୁମେ ସେଥିରୁ ଦୁଇଗୋଟି କାଟି ଆଣିବ। ତୁମ ଅଧିକାରକୁ ଉକ୍ତ ହୀରକ ଦୁଇଟି ଆସିଲେ, ମୋତେ ଜଣାଇବ।''

ସେ ଉକ୍ତ ପତ୍ରଖଣ୍ଡିକ ଖାମ୍‌ରେ ଭଲଭାବରେ ରଖି ତା ଉପରେ ଠିକଣା ଲେଖିଲେ– 'ଲେଡି ଉଇଣ୍ଟର୍, ଲଣ୍ଡନ।' ସେ ଲୋକ ଆସିବା ସଙ୍ଗେ ସଙ୍ଗେ କାର୍ଡିନାଲ୍ ତାକୁ କହିଲେ, ''ଭିଟ୍ରେ, ବର୍ତ୍ତମାନ ତୁମେ ଲଣ୍ଡନ ଯାତ୍ରାକର ଓ ଲେଡି ଉଇଣ୍ଟର୍‌କୁ ଏହି ପତ୍ର ପ୍ରଦାନ କର। ତୁମ ଖର୍ଚ୍ଚ ପାଇଁ ଦୁଇଶତ ପିସ୍ତୋଲ ନିଅ। ମୁଁ ଆଶାକରେ, ତୁମେ ଛ'ଦିନ ମଧ୍ୟରେ ଫେରିଆସିବ।'' ଭିଟ୍ରେ ପତ୍ର ନେଇ ଯାତ୍ରା ଆରମ୍ଭ କଲେ।

## ଏମ୍. ଡି. ଟ୍ରିଭିଲଙ୍କ ଦୃଢ଼ତା

ମସ୍‌କେଟିଅର୍‌ମାନଙ୍କ ପାଇଁ ଏମ୍. ଡି. ଟ୍ରିଭିଲ୍ ସେମାନଙ୍କ ସେନାପତି ଅପେକ୍ଷା ଅଧିକ କିଛି ଥିଲେ। ସେମାନେ ମନେକରୁଥିଲେ ଯେ, ଦରକାର ବେଳେ ଟ୍ରିଭିଲ୍ ସେମାନଙ୍କୁ ସାହାଯ୍ୟ ଓ ସମର୍ଥନ ଦେବେ। ସେମାନେ ତାଙ୍କୁ ଭ୍ରାତୃତୂଲ୍ୟ ମନେକରୁଥିଲେ। ଆଥସ୍ ଇଭିକ୍ ଦୁର୍ଗରେ ବନ୍ଦୀଥିବା

ଖବର ଶୁଣିଲାମାତ୍ରେ ଟ୍ରିଭିଲ୍ ସେଠାକୁ ବାହାରିପଡ଼ିଲେ। ବନ୍ଦିଶାଳାର ଗଭର୍ଣ୍ଣର ଟ୍ରିଭିଲ୍‌ଙ୍କୁ ଜଣାଇଦେଲେ ଯେ, କାର୍ଡିନାଲ୍ ରିଚିଲିଉଙ୍କ ଲିଖିତ ଆଦେଶ ବିନା ଆଥସ୍‌ଙ୍କୁ ମୁକ୍ତି ଦିଆଯାଇ ପାରିବ ନାହିଁ। ଅଫିସର ପୁଣି କହିଲେ, "କାର୍ଡିନାଲ୍ ରିଚିଲିଉଙ୍କ ପରାମର୍ଶରେ ତାଙ୍କୁ ବନ୍ଦୀ କରାଯାଇଛି।"

ଏହାପରେ ଆଉ ସମୟ ନଷ୍ଟ ନକରି ଟ୍ରିଭିଲ୍ ଆଥସ୍‌ଙ୍କୁ ମୁକ୍ତ କରିବା ପାଇଁ ତଥା ତାଙ୍କ ଆପତ୍ତି ରାଜାଙ୍କୁ ଜଣାଇବା ପାଇଁ ଲୋଭର୍ ରାଜପ୍ରାସାଦକୁ ଚାଲିଲେ। ରାଜାଙ୍କ ମସ୍‌କେଟିଅର୍‌ମାନଙ୍କର କାପ୍ଟେନ୍‌ରୂପେ ଟ୍ରିଭିଲ୍ ରାଜାଙ୍କ ନିକଟକୁ ସିଧା ଯାଇ ଦେଖାକରିବା ଅଧିକାର ପାଇଥିଲେ। ସେ ଲୋଭର୍‌ରେ ପହଞ୍ଚି ଜାଣିଲେ ଯେ, ରାଜାଙ୍କ ପାଖରେ କାର୍ଡିନାଲ୍ ନିଜେ ଅଛନ୍ତି। ଏଥିରେ ଟ୍ରିଭିଲ୍‌ଙ୍କର ଆଥସ୍‌ଙ୍କୁ ବନ୍ଦିଶାଳାରୁ ଯଥାଶୀଘ୍ର ମୁକ୍ତ କରିବାପାଇଁ ଦୃଢ଼ତା ବଢ଼ିଗଲା ଏବଂ ଏଥିପାଇଁ କାର୍ଡିନାଲ୍‌ଙ୍କୁ ଆଦେଶପତ୍ର ନିଜେ ଲେଖିବାପାଇଁ ବାଧ କରାଯିବା ବିଷୟ ମଧ୍ୟ ସେ ଠିକ୍ କରିନେଲେ। ସେ ରାଜାଙ୍କ ପାଖରେ ପହଞ୍ଚିବାରୁ ରାଜା ତାଙ୍କୁ କହିଲେ, "ଆପଣ ଠିକ୍ ସମୟରେ ପହଞ୍ଚିଛନ୍ତି। ଆପଣଙ୍କ ମସ୍‌କେଟିଅର୍‌ମାନଙ୍କ ସମ୍ବନ୍ଧେ ମୁଁ ଅନେକ ନୂତନ ଖବର ଶୁଣିଛି।"

ଟ୍ରିଭିଲ୍ ଉତ୍ସାହବିହୀନ ଭାବରେ କହିଲେ, "ସାଧାରଣ ପୁଲିସ ଓ ସେମାନଙ୍କ ଅଫିସରମାନଙ୍କ ବିଷୟରେ ମୁଁ ମଧ୍ୟ ଅନେକ ସୁନ୍ଦର ତଥ୍ୟ ସଂଗ୍ରହ କରିଛି ଓ ସେ ସବୁ ହଜୁରଙ୍କ ନିକଟରେ ବ୍ୟକ୍ତ କରିବି।"

ପୂର୍ବଭଳି ଟ୍ରିଭିଲ୍ କହିବାକୁ ଲାଗିଲେ, "ଶ୍ରୀହଜୁରଙ୍କ ନିକଟରେ ମୁଁ ଜଣାଉଛି ଯେ, ଦଳେ ପୁଲିସ ଜଣେ ବ୍ୟକ୍ତିଙ୍କ ଗୃହରେ ପ୍ରବେଶ କରି ମୋର, ବିଶେଷତଃ ଆପଣଙ୍କର ଜଣେ ମସ୍‌କେଟିଅର୍‌ଙ୍କୁ ବନ୍ଦୀ କରିଛନ୍ତି ଏବଂ ସାଧାରଣ ଚୋର ଭଳି ଉକ୍ତ ଭଦ୍ରବ୍ୟକ୍ତିଙ୍କୁ ବିଚ୍ ରାସ୍ତା ଉପରେ ଚଲେଇ ଚଲେଇ ନିଆଯାଇ ଇଭିକ୍ ଦୁର୍ଗକୁ ଠେଲିଦିଆଯାଇଛି। ଯେଉଁ ଆଦେଶପତ୍ର ଅନୁଯାୟୀ ଏହା କରାଯାଇଛି, ତାହା ଜେଲ୍ ଅଫିସର ମୋତେ ଦେଖାଇବାକୁ ମନାକରି ଦେଇଛନ୍ତି। ଉକ୍ତ ବନ୍ଦୀ ଯେପରି ଚରିତ୍ରବାନ୍, ସେହିପରି ମଧ୍ୟ ରାଜଭକ୍ତ। ହଜୁରଙ୍କ ନିକଟରେ ସେ ବେଶ୍ ଜଣାଶୁଣା। ତାଙ୍କ ନାମ ଏମ୍. ଆଥସ୍।"

ରାଜା ଚିନ୍ତାକରି କହିଲେ– "ଆଥସ୍, ଆଥସ୍; ହଁ, ମୁଁ ନିଶ୍ଚୟ ଏହି ନାମ ଶୁଣିଛି।"

ଟ୍ରିଭିଲ୍ କହିଲେ– "ହଜୁର ତାଙ୍କୁ ନିଃସନ୍ଦେହଭାବେ ଜାଣନ୍ତି। ଏହି ମସ୍‌କେଟିଅର୍ ନିଜ ଇଚ୍ଛା ବିରୁଦ୍ଧରେ କାର୍ଡିନାଲ୍‌ଙ୍କ ସର୍ବଶ୍ରେଷ୍ଠ ତରବାରିଚାଳକଙ୍କୁ

ଦ୍ୱନ୍ଦ୍ୱଯୁଦ୍ଧରେ ବିଶେଷ ଭାବରେ ଆହତ କରିଥିଲେ।'' ତ୍ରିଭିଲ୍ କାର୍ଡିନାଲ୍‌ଙ୍କ ଉଦ୍ଦେଶ୍ୟରେ କହିଲେ, ''ମୋର ଆଶା ଏମ୍. ଡି. କହୁସେକ୍ ବର୍ତ୍ତମାନ ସଂପୂର୍ଣ୍ଣ ସୁସ୍ଥ।''

କାର୍ଡିନାଲ୍‌ଙ୍କ ଚକ୍ଷୁଯୁଗଳ ଯେପରି କ୍ରୋଧରେ ଜଳୁଥିଲା। ସେ କହିଲେ, ''ଧନ୍ୟବାଦ।'' ତ୍ରିଭିଲ୍ ପୁଣି ରାଜାଙ୍କ ଉଦ୍ଦେଶ୍ୟରେ କହିଲେ, ''ଆଥସ୍ ତାଙ୍କ ବନ୍ଧୁ ଦାର୍‌ତାଙ୍ଙ୍କ ସହିତ ସାକ୍ଷାତ୍ ପାଇଁ ତାଙ୍କ ଗୃହକୁ ଯାଇଥିଲେ। ସମ୍ଭବତଃ ଦାର୍‌ତାଙ୍ଙ୍କ ସେ ସମୟରେ ଘରେ ଅନୁପସ୍ଥିତ ଥିଲେ। ଆଥସ୍ ସେଠାରେ ବସି ବହିଖଣ୍ଡେ ଓଲଟପାଲଟ କରୁଥିଲେ। ଏହି ସମୟରେ ଦଳେ ପୋଲିସ ଘର ମଧ୍ୟରେ ପ୍ରବେଶ କରି ତାଙ୍କୁ ଗିରଫ କଲେ।''

ରାଜା କହିଲେ, ''ସେ କଥା ମୁଁ ଜାଣେ; କାରଣ ଏହି କାର୍ଯ୍ୟଟି ରାଜକାର୍ଯ୍ୟ ଥିଲା।''

ତ୍ରିଭିଲ୍ କହିଲେ, ''ଏହା ମଧ୍ୟ ଶ୍ରୀହଜୁରଙ୍କ କାର୍ଯ୍ୟ ପାଇଁ କରାଯାଇଛି ଯେ, ଶ୍ରୀହଜୁରଙ୍କର ଜଣେ ମସ୍‌କେଟିଅର୍ ଗିରଫ ହୋଇ ବିଚ୍ ବଜାର ରାସ୍ତାରେ ଟଣାହୋଇଗଲେ। ସେ ଯେଉଁ ରାଜପୋଷାକ ପରିଧାନ କରିଥିଲେ ତା' ପ୍ରତି ଏହା କଣ କମ୍ ଅବମାନନା? ଏହି ବୀର ଯୁବକ ଶ୍ରୀହଜୁରଙ୍କ ପାଇଁ ଦଶବାର ରକ୍ତପାତ କରିଛି ଏବଂ ଆଉ ଅନେକବାର ମଧ୍ୟ କରିବ।''

ରାଜା ଏକଥା ଅନୁଭବ କଲେ ଓ କାର୍ଡିନାଲ୍‌ଙ୍କ ଆଡ଼େ ଚାହିଁ କହିଲେ – ''ଏସବୁ ବିଷୟ କ'ଣ ଆପଣ ଏହିପରି ବ୍ୟବସ୍ଥା କରିଛନ୍ତି।''

କାର୍ଡିନାଲ୍ ଭାବିଲେ ସେ ନିରାପଦରେ ଅଛନ୍ତି। ସେ କହିଲେ, ''ଶ୍ରୀହଜୁର, ଏମ୍. ଡି. ତ୍ରିଭିଲ୍ କହୁନାହାନ୍ତି ଏହି ଚରିତ୍ରବାନ୍ ବ୍ୟକ୍ତି ମାତ୍ର ଏକଘଣ୍ଟା ପୂର୍ବେ ତାଙ୍କ ତରବାରିରେ ଚାରିଜଣ ପୁଲିସଙ୍କୁ ଆକ୍ରମଣ କରିଥିଲେ। ଉକ୍ତ ପୁଲିସଦଳ ଏକ ବିଶେଷ କାର୍ଯ୍ୟର ତଦାରଖ ପାଇଁ ପ୍ରେରିତ ହୋଇଥିଲେ।''

ତ୍ରିଭିଲ୍ ଜଣେ ଗାସ୍‌କନ୍ ଯୁବକର ତେଜରେ କହିଲେ, ''ସେ ଏହାର ପ୍ରମାଣ ଦିଅନ୍ତୁ। ମୁଁ ଶପଥ କରି କହିପାରେ, ଆଥସ୍ ଉଚ୍ଚବଂଶଜ ଏବଂ ଗତ କାଲି ମୋ ସହିତ ରାତ୍ରିଭୋଜନ କରିଥିଲେ। ଭୋଜନ ପରେ ଆଥସ୍ କାଉଣ୍ଟ ଡି. ଚାର୍ଲସ ଓ ଡ୍ୟୁକ୍ ଡି. ଲାଟ୍ରିମୋଲିଙ୍କ ସହିତ – ଏମାନେ ସମସ୍ତେ ମୋର ନିମନ୍ତ୍ରିତ ବ୍ୟକ୍ତି ଥିଲେ – ସେ କହୁଥିବା ପୋଲିସମାନଙ୍କ ଉପରେ ଆକ୍ରମଣର ଏକଘଣ୍ଟା ପୂର୍ବରୁ କଥାବାର୍ତ୍ତା କରୁଥିଲେ। ଉକ୍ତ ଭଦ୍ରବ୍ୟକ୍ତିମାନେ ଶ୍ରୀହଜୁରଙ୍କର ଅପରିଚିତ ନୁହନ୍ତି।''

ରାଜା କାର୍ଡିନାଲ୍‌ଙ୍କ ପ୍ରତି ଦୃଷ୍ଟିନିକ୍ଷେପ କଲେ – ସତେ ଯେପରି

ସେ ତାଙ୍କଠାରୁ ପ୍ରମାଣ ଇଚ୍ଛା କରୁଥିଲେ। ରାଜାଙ୍କ ପ୍ରଶ୍ନବାଚୀ ଚାହାଣିର ଉତ୍ତରସ୍ୱରୂପ କାର୍ଡିନାଲ୍ କହିଲେ, "ଏସବୁ ବିଷୟରେ ମୁଁ ଲିଖିତ ବିବରଣୀ ପାଇଅଛି।" ସେ ତାଙ୍କ ପକେଟ୍‌ରୁ ଖଣ୍ଡିଏ ଚଉଡ଼ା କାଗଜ କାଢ଼ି କହିଲେ, "ଉକ୍ତ କର୍ମଚାରିଗଣ ଏପରିଭାବରେ ନିର୍ଯାତିତ ହୋଇଥିଲେ ଯେ, ସେମାନେ ମୋ ନିକଟରେ ଏକ ବିଶେଷ ଆପତ୍ତି କରିଛନ୍ତି, ତାହା ମୁଁ ଶ୍ରୀହଜୁରଙ୍କ ନିକଟରେ ଉପସ୍ଥାପନ କରୁଅଛି।"

ଟ୍ରିଭିଲ୍ ନିର୍ଭୀକ ଭାବରେ ଦାବିକଲେ – "ସାଧାରଣ ପୁଲିସ୍‌ର ଲିଖିତ କଥା କେତେ ପଦ କଣ ଶ୍ରୀହଜୁରଙ୍କ ମସ୍କେଟିଅର୍‌ମାନଙ୍କ ସେନାପତିର କଥିତ ଆପତ୍ତି ସହିତ ତୁଳନୀୟ।" ରାଜା ଅନୁଭବ କଲେ ଯେ, କାର୍ଡିନାଲ୍ ତାଙ୍କର ଏକ କୌଶଳରେ ଧରାପଡ଼ିଯାଇଛନ୍ତି। ତଥାପି ସେ କହିଲେ, "ଆଚ୍ଛା ଆଚ୍ଛା, ଟ୍ରିଭିଲ୍! ଆପଣ ଟିକିଏ ଚୁପ୍ ରହନ୍ତୁ।"

ଟ୍ରିଭିଲ୍ କହିଲେ, "ମୋର ମସ୍କେଟିଅର୍‌ମାନଙ୍କ ମଧ୍ୟରୁ ଜଣକ ବିରୁଦ୍ଧରେ ଯଦି ଶ୍ରୀହଜୁରଙ୍କର ସନ୍ଦେହ ରହିଛି, ତାହାହେଲେ ଏହାର ଅନୁସନ୍ଧାନ କରାଯାଉ।"

କାର୍ଡିନାଲ୍ ସତେ ଯେପରି ଟ୍ରିଭିଲ୍‌ଙ୍କର କ୍ରୋଧପୂର୍ଣ୍ଣ କଥା ଶୁଣିନାହାନ୍ତି, ସେପରି ଅଭିନୟ କରି କହିଲେ, "ମୋର ବିଶ୍ୱାସ ମସ୍କେଟିଅର୍‌ଙ୍କ ବନ୍ଧୁ ଜଣେ ଗାସ୍‌କନ୍ ଯୁବକ, ଜଣେ ରାଜଦ୍ରୋହୀ ଯେଉଁଠାରେ ଗ୍ରେପ୍ତାର ହୋଇଛି ସେଠାରେ ବାସକରନ୍ତି।"

"ଆପଣ ଦାର୍‌ତାଁ ବିଷୟରେ କହୁଛନ୍ତି ତ ?"

"ମୁଁ ଆପଣଙ୍କର ସେହି ଆଶ୍ରିତ ଯୁବକଙ୍କ କଥା କହୁଛି, ଏମ୍. ଡି. ଟ୍ରିଭିଲ୍।"

"ସେ ଠିକ୍ ସେହି ଯୁବକ।"

"ଏହି ଯୁବକ ଯେ କୁଉପଦେଶ ପ୍ରଦାନ କରିଛନ୍ତି, ଏହା କଣ ଆପଣ ଭାବୁନାହାନ୍ତି –"

ଟ୍ରିଭିଲ୍ ସଙ୍ଗେ ସଙ୍ଗେ ଉତ୍ତର ପ୍ରଦାନ କଲେ, "ସେହି ଯୁବକ ଅପେକ୍ଷା ଏମ୍. ଆଥସ୍ ଯଥେଷ୍ଟ ବୟସ୍କ। ତା' ଛଡ଼ା ଦାର୍‌ତାଁ ମଧ୍ୟ ମୋ ସହିତ ସଂଧ୍ୟାରେ କେତେକ ସମୟ ଥିଲେ।"

କାର୍ଡିନାଲ୍ ଉତ୍ତର ଦେଲେ, "ଓଃ, ଜଣାଯାଏ ପ୍ୟାରିସ୍‌ର ଅଧାଲୋକ ଆପଣଙ୍କ ସହ ସଂଧ୍ୟାଟି କଟାଇଥିଲେ।" ଟ୍ରିଭିଲ୍‌ଙ୍କର ମୁଖମଣ୍ଡଳ ଯେପରି କ୍ରୋଧରେ ଥରିଉଠୁଥିଲା ଏବଂ ସେ ଟିକିଏ ଉଚ୍ଚଗଳାରେ କହିଲେ, "ଆପଣଙ୍କର

ମୋ କଥାରେ ସନ୍ଦେହ ଜାତ ହେଉଛି ?'' କାର୍ଡିନାଲ୍ ଧୀରକଣ୍ଠରେ କହିଲେ, ''ହେ ଭଗବାନ୍, କେବେ ନୁହେଁ; ସେ ଯାହାହେଉ, ମୁଁ ଜାଣିବାକୁ ଚାହୁଁଛି, ସେ ଆପଣଙ୍କ ସହିତ କେଉଁ ସମୟରେ ଥିଲେ।''

''ତା ମଧ୍ୟ ମୁଁ ଠିକ୍ କହିପାରିବି। ସେ ଯେତେବେଳେ ମୋ ସହିତ ଦେଖାକଲେ, ସେତେବେଳେ ଘଣ୍ଟାରେ ସାଢ଼େ ନଅଟା ବାଜିଥିଲା; କିନ୍ତୁ ମୋର ମନେହେଉଥିଲା ସମୟ ଆଉ ଟିକିଏ ଅଧିକ ହୋଇଥିବ ବୋଲି।''

''ସେ କେତେଟାବେଳେ ଆପଣଙ୍କ ଘର ଛାଡ଼ିଗଲେ ?''

''ସେ ୧୦ଟା ସମୟରେ ଗଲେ; ଅର୍ଥାତ୍ ଏହି ଘଟଣା ଘଟିବାର ଏକ ଘଣ୍ଟା ପରେ।''

ଟ୍ରିଭିଲ୍‌ଙ୍କ ସାଧୁତା ତଥା ସତ୍ୟକଥନ ବିଷୟରେ କାର୍ଡିନାଲ୍‌ଙ୍କର ମୁହୂର୍ତ୍ତକ ପାଇଁ ମଧ୍ୟ ସନ୍ଦେହ ଜାତ ହୋଇନଥିଲା। ସେ ଅନୁଭବ କରୁଥିଲେ, ଯେପରି କି ବିଜୟଲାଭ ତାଙ୍କଠାରୁ କ୍ରମେ ଦୂରେଇଯାଇଥିଲା। ସେ ମୁହୂର୍ତ୍ତେ ମାତ୍ର ଚିନ୍ତାକରି କହିଲେ, ''ସେ ଯାହାହେଉ ପଛେ, ଆପଣ ଭୁଲିଯାଆନ୍ତୁ ନାହିଁ ଯେ, ଆଥସ୍‌ଙ୍କୁ ସେହି ଗୃହରେ ଗିରଫ କରାଯାଉଛି।''

''ଜଣେ ବନ୍ଧୁଙ୍କ ପକ୍ଷରେ ଅନ୍ୟ ଜଣେ ବନ୍ଧୁଙ୍କୁ ସାକ୍ଷାତ୍ କରିବା କ'ଣ ମନା; ମୋର ଜଣେ ମସ୍‌କେଟିଅର୍ ଏସାର୍ଟେସ୍‌ଙ୍କ ଦଳର ଜଣେ ବ୍ୟକ୍ତିଙ୍କ ସହିତ ବନ୍ଧୁତା କରିପାରିବେ ନାହିଁ ?''

''ନିଶ୍ଚୟ, ଯେଉଁ ଗୃହଟିକୁ ସନ୍ଦେହ ମଧ୍ୟରେ ରଖାଯାଇଛି, ଉକ୍ତ ଗୃହରେ ଅନ୍ତତଃ ନୁହେଁ।''

ରାଜା କହିଲେ, ''ଟ୍ରିଭିଲ୍, ଆପଣ ବୋଧହୁଏ ଜାଣନ୍ତି ନାହିଁ ଯେ, ଉକ୍ତ ଗୃହଟିକୁ ସନ୍ଦେହରେ ରଖାଯାଇଛି।''

''ବାସ୍ତବିକ୍ ଶ୍ରୀହଜୁର! ମୁଁ ଜାଣି ନ ଥିଲି। ଗୃହଟିକୁ ସନ୍ଦେହରେ ରଖାଯାଇପାରିଥାଏ; କିନ୍ତୁ ଦାରତାୟାଁ ଯେଉଁ ଅଂଶରେ ବାସ କରୁଥିଲେ, ସେ ପଟଟି ଅବଶ୍ୟ ନୁହେଁ। ମୁଁ ଏହା ନିଶ୍ଚିତ ଭାବରେ କହିପାରେ ଯେ, ଦାରତାୟାଁ ଶ୍ରୀହଜୁରଙ୍କର ଏକାନ୍ତ ଅନୁରକ୍ତ।''

କାର୍ଡିନାଲ୍‌ଙ୍କ ମୁଖମଣ୍ଡଳ ସେ ସମୟକୁ କ୍ରୋଧରେ ରକ୍ତାଭ ହୋଇପଡ଼ିଥିଲା। ତାଙ୍କ ଆଡ଼କୁ ଦୃଷ୍ଟିନିକ୍ଷେପ କରି ରାଜା କହିଲେ, ''ଆଚ୍ଛା, ଏହି ଯୁବକ ଡେସ୍‌ଚକ୍ସ ଗିର୍ଜା ନିକଟରେ ଜୁସାକ୍‌କୁ ଆହତ କରି ନଥିଲା କି ?'' ଟ୍ରିଭିଲ୍ ମିଶାଇ କହିଲେ, ''ତା ପରଦିନ ମଧ୍ୟ ବେର୍ଣ୍ଣୋଜୋକ୍ସକୁ ଆଘାତ କରି ଅଚଳ କରିଦେଇଥିଲା। ହଁ ହଜୁର, ଏ ସେହି ଯୁବକ। ଶ୍ରୀହଜୁର

ଠିକ୍ ମନେରଖିଛନ୍ତି।''

ରାଜା କାର୍ଡିନାଲ୍‌ଙ୍କ ଦୃଷ୍ଟି ଆକର୍ଷଣ କରି କହିଲେ, ''କହନ୍ତୁ, ଆମେ ବର୍ତ୍ତମାନ କ'ଣ ନିଷ୍ପତ୍ତି କରିବା ?'' କାର୍ଡିନାଲ୍ ଉତ୍ତରଦେଲେ, ''ଯାହା ଶ୍ରୀହଜୁର ଚିନ୍ତା କରୁଛନ୍ତି। ମୁଁ କିନ୍ତୁ ନିଷ୍ପତ୍ତି କରିଛି ଯେ, ସେ ଦୋଷୀ।''

ଟ୍ରିଭିଲ୍ କହିଲେ, ''ମୁଁ କିନ୍ତୁ ତାହା ମନାକରୁଛି। ଶ୍ରୀହଜୁରଙ୍କର ବିଚାରପତିମାନେ ଅଛନ୍ତି; ସେମାନେ ଏହାର ବିହିତ ବିଚାର କରିପାରିବେ।''

ରାଜା ନିଜେ କୌଣସି ନିଷ୍ପତ୍ତି ନଦେଇ କହିଲେ, ''ହଁ, ତାହାହିଁ ହେବ। ଏହି ବିଷୟଟିକୁ ବିଚାରପତିଙ୍କ ନିକଟକୁ ପଠାଇଦିଆଯାଉ। ଏହା ବିଚାର କରିବା ସେମାନଙ୍କର କାର୍ଯ୍ୟ।''

ଟ୍ରିଭିଲ୍ ପୁଣି କହିଲେ, ''ଏହା ବିଶେଷ ଦୁଃଖଦାୟକ ଯେ, ଏହି ଦୁର୍ଦ୍ଦିନରେ ଜଣେ ସାଧୁ ଓ ରାଜାନୁରକ୍ତ ବ୍ୟକ୍ତି ମଧ୍ୟ ଅନ୍ୟାୟ ଗ୍ରେପ୍ତାରିରୁ ରକ୍ଷାପାଇପାରୁନାହିଁ। ମୁଁ ମସ୍କେଟିଅର୍‌ମାନଙ୍କ ତରଫରୁ ଉତ୍ତର ଦେବି। ମୁଁ କିନ୍ତୁ ଆପଣଙ୍କୁ ନିର୍ଦ୍ଦିଷ୍ଟ ଭାବରେ କହିପାରେ ଯେ, ସାଧାରଣ ପୁଲିସ୍‌ର ଏପରି ଅତ୍ୟାଚାର ନିଶ୍ଚୟ ଅସନ୍ତୋଷର କାରଣ ହେବ।''

ଟ୍ରିଭିଲ୍ ଏହିପରି କହିବାଟା ଟିକିଏ ହୁଣ୍ଡାମି ହେଲା। ରାଜା କହିଲେ, ''ସାଧାରଣ ପୁଲିସ! ଏସବୁ କଥା ଆପଣଙ୍କ କାର୍ଯ୍ୟ ନୁହେଁ। ଆପଣ ଆପଣଙ୍କ ମସ୍କେଟିଅର୍‌ଙ୍କ କଥା ଦେଖନ୍ତୁ। ଏଥିରେ ମୋତେ ବିରକ୍ତ କରନ୍ତୁ ନାହିଁ। ଆପଣ ଯେପରି କହୁଛନ୍ତି, ସେଥିରୁ ମନେହୁଏ, ଜଣେ ମସ୍କେଟିଅର୍ ବନ୍ଦୀ ହେବାରୁ ଫ୍ରାନ୍ସ ବିପଦରେ ପଡ଼ିଛି। ଜଣେ ସାମାନ୍ୟ ରକ୍ଷୀ ପାଇଁ ଏତେ ଆନ୍ଦୋଳନ! କାହିଁକି ? ମୁଁ ଦଶଜଣ, ଶହେଜଣ ଏପରିକି ପୂରା ଏକ କମ୍ପାନୀକୁ ମଧ୍ୟ ବନ୍ଦୀ କରିପାରେ। ଆଉ ଏପରି ଆପତ୍ତି ଅଭିଯୋଗ କରିବାକୁ ମଧ୍ୟ ସୁଯୋଗ ଦେଇ ନ ପାରେ।''

ଟ୍ରିଭିଲ୍ ଦୃଢ଼ଗଳାରେ କହିଲେ, ''ମସ୍କେଟିଅର୍‌ମାନେ ଯେଉଁ ମୁହୂର୍ତ୍ତରେ ସନ୍ଦେହର ପାତ୍ର ହୁଅନ୍ତି, ସେମାନେ ସଙ୍ଗେ ସଙ୍ଗେ ଦୋଷୀ ସାବ୍ୟସ୍ତ ହୁଅନ୍ତି। ତେଣୁ ମୁଁ ଏହିଠାରେ ମୋର ତରବାରି ସମର୍ପଣ କରୁଅଛି। ଯେତେବେଳେ କାର୍ଡିନାଲ୍ ମହାଶୟ ମୋର ସୈନିକମାନଙ୍କୁ ଅଭିଯୁକ୍ତ କରିଛନ୍ତି, ସେ ମୋତେ ଅଭିଯୁକ୍ତ ନ କରି ସନ୍ତୁଷ୍ଟ ରହିପାରିବେ ନାହିଁ। ତେଣୁ ମୋପକ୍ଷରେ ନିଜକୁ ବନ୍ଦୀ ମନେକରିବା ସ୍ୱାଭାବିକ। ଆଥସ୍ ତ ବନ୍ଦୀ ହୋଇସାରିଛନ୍ତି, ଆଉ ମଧ୍ୟ ଯଥାଶୀଘ୍ର ଦାର୍‌ତାୟାଁ ବନ୍ଦୀ ହେବ।''

ରାଜା ଆଉ କଣ କହିବେ ଭାବି ନପାରି କହିଲେ, ''ଆଚ୍ଛା କ୍ରୋଧୀ

ଗାସ୍‌କନ୍, ଅପେକ୍ଷା କର।'' ଟ୍ରିଭିଲ୍ ସାମାନ୍ୟ ମାତ୍ର ସ୍ୱର ନ କମାଇ କହିଲେ, ''ହଜୁର, ମୋର ମସ୍‌କେଟିଅର୍ ମୁକ୍ତ ହେବ ନା ମୁକ୍ତ ଦରବାରରେ ତାର ବିଚାର ହେବ ?''

କାର୍ଡିନାଲ୍ କହିଲେ, ''ବରଂ ତାଙ୍କର ବିଚାର ହେଉ।''

ଟ୍ରିଭିଲ୍ କହିଲେ ''ଆଚ୍ଛା, ଠିକ୍ ଅଛି! ସେପରି ହେଲେ ଦରବାରରେ ମୁଁ ତାଙ୍କ ତରଫରୁ ଜେରା କରିବି।''

ବର୍ତ୍ତମାନ ରାଜା ପ୍ରକୃତରେ ଅଡୁଆରେ ପଡ଼ିଲେ। ସେ କହିଲେ, ''ଆଥସ୍‌କୁ ବନ୍ଦୀ କରିବାରେ କାର୍ଡିନାଲ୍‌ଙ୍କର ବ୍ୟକ୍ତିଗତ କାରଣ ଅଛି କି ?''

ବର୍ତ୍ତମାନ କାର୍ଡିନାଲ୍ ଦେଖିଲେ ଯେ, ରାଜା ବିଗାଡ଼ିଟିକୁ ଜାଲରୁ ଛାଡ଼ିଦେବା ଉପରେ। ତେଣୁ କଥାର ଧାରା ବଦଳାଇବା ପାଇଁ ସେ ସଙ୍ଗେ ସଙ୍ଗେ କହିଲେ, ''ମୋତେ କ୍ଷମା କରନ୍ତୁ ହଜୁର! ଏ ପରିସ୍ଥିତିରେ ଉକ୍ତ ବିଷୟରୁ ମୁଁ ଅପସରିଯାଉଛି।''

ରାଜା ଠିକ୍ ବୁଝିପାରି କହିଲେ, ''ଟ୍ରିଭିଲ୍, ମୋର ପିତାଙ୍କ ନାମରେ ଆପଣ କଣ ଶପଥ କରି କହିପାରିବେ ଯେ, ଆଥସ୍ ପ୍ରକୃତରେ ଆପଣଙ୍କ ଘରେ ଥିଲେ ଏବଂ ଏହି ଘଟଣାରେ ସେ ଆଦୌ ସଂପୃକ୍ତ ନୁହନ୍ତି ?''

''ମୁଁ ଆପଣଙ୍କର ମହାନ୍ ପିତାଙ୍କ ନାମରେ ଶପଥ କରୁଛି। ମୁଁ ତାଙ୍କ ନିକଟରେ କାର୍ଯ୍ୟ କରିଛି, ଅନୁରକ୍ତି ସହ ଶ୍ରୀହଜୁରଙ୍କ ପାଖରେ ମଧ। ମୁଁ ଶ୍ରୀହଜୁରଙ୍କ ନିକଟରେ ମଧ ଶପଥ କରୁଛି।''

କାର୍ଡିନାଲ୍ କହିଲେ, ''ଶ୍ରୀହଜୁର ଆଉ ଥରେ ଭଲଭାବରେ ଏହାର ବିଚାର କରନ୍ତୁ। ଆମେ ଯଦି ବନ୍ଦୀକୁ ଏପରି ଭାବରେ ମୁକ୍ତି ଦେଉ, ତାହାହେଲେ ପ୍ରକୃତ ସତ୍ୟ ଆମେ ଆବିଷ୍କାର କରିପାରିବା ନାହିଁ।''

ଟ୍ରିଭିଲ୍ କହିଲେ, ''ଆଥସ୍ ସଦାସର୍ବଦା ଏହିଠାରେ ଥିବେ। ଯେତେବେଳେ ପୁଲିସ ତାଙ୍କୁ ଯାହା ପ୍ରଶ୍ନ ପଚାରିବେ, ସେ ସବୁର ଉତ୍ତର ଦେବାପାଇଁ ସେ ପ୍ରସ୍ତୁତ। କେଉଁଆଡ଼େ ପଳାଇଯିବା ତାଙ୍କ ଜାତକରେ ନାହିଁ। ତା'ଛଡ଼ା ମୁଁ ମଧ ତାଙ୍କ ତରଫରୁ ଉତ୍ତର ଦେବି।''

ରାଜା କହିଲେ, ''ସେକଥା ଠିକ୍। ସେ ସଦାସର୍ବଦା ଏଠାରେ ମିଳିପାରିବେ।''

କାର୍ଡିନାଲ୍ ପୁଣି କହିଲେ, ''ଶ୍ରୀହଜୁର ଯାହା ଆଦେଶ ଦେବାର ଦିଅନ୍ତୁ। କ୍ଷମା ଦେବାର ଅଧିକାର କେବଳ ଶ୍ରୀହଜୁରଙ୍କର ଅଛି।''

ଟ୍ରିଭିଲ୍ ସଙ୍ଗେ ସଙ୍ଗେ ଉତ୍ତର ଦେଲେ, ''କେବଳ ଦୋଷୀମାନଙ୍କୁ

କ୍ଷମା ଦିଆଯାଇଥାଏ। ଆଥସ୍ କିନ୍ତୁ ନିର୍ଦ୍ଦୋଷ, ଏକଥା ମୁଁ ଦୃଢ଼ଭାବରେ କହିପାରେ। ତେଣୁ ଶ୍ରୀହଜୁର ଏଥିରେ କୌଣସି ଦୟା ପ୍ରଦର୍ଶନ କରୁନାହାନ୍ତି – କେବଳ ନ୍ୟାୟ ବିଚାର କରୁଛନ୍ତି।''

କାର୍ଡିନାଲ୍ କହିଲେ, ''ତାଙ୍କର ମୁକ୍ତିପାଇଁ ଶ୍ରୀହଜୁର ଆଦେଶ ଦେବାହିଁ ଠିକ୍ ହେବ ବୋଲି ମୁଁ ମନେକରୁଛି। ଶ୍ରୀହଜୁରଙ୍କଠାରେ ମୋର ଆସ୍ଥା ରହିଛି। ଏମ୍. ଡି. ଟ୍ରିଭିଲ୍ ଯାହା କହିଛନ୍ତି, ତାହା ଯଥେଷ୍ଟ।''

ଟ୍ରିଭିଲ୍ କାର୍ଡିନାଲଙ୍କୁ ଭକ୍ତିର ସହ ପ୍ରଣତି ନିବେଦନ କଲେ। ସେ ଯେପରି ଆନନ୍ଦ ଓ ଭୟର ମିଶ୍ରଣ ନିଜ ମଧ୍ୟରେ ଅନୁଭବ କରିପାରୁଥିଲେ। ଆଥସ୍‌ଙ୍କ ମୁକ୍ତିପତ୍ରରେ ରାଜା ସ୍ୱାକ୍ଷର କରି ଟ୍ରିଭିଲଙ୍କୁ ତାହା ବଢ଼ାଇଦେଲେ। ସେ ତାହା ସଭକ୍ତି ଗ୍ରହଣ କରି ଯିବାପାଇଁ ଅନୁମତି ଭିକ୍ଷାକଲେ। ସେ ଯେତେବେଳେ ଉକ୍ତ ସ୍ଥାନ ଛାଡ଼ିଲେ, କାର୍ଡିନାଲ୍ ତାଙ୍କୁ ବନ୍ଧୁତାସୂଚକ ସ୍ମିତହାସ୍ୟ ସହ ଅଭିବାଦନ ଜ୍ଞାପନ କଲେ।

ଟ୍ରିଭିଲ୍ ମନେ ମନେ ଚିନ୍ତା କରିବାକୁ ଲାଗିଲେ, 'କାର୍ଡିନାଲ୍ ଯଥାଶୀଘ୍ର ତାଙ୍କର ପ୍ରତିଫଳ ଭୋଗକରିବେ। ଏଭଳି ଲୋକ ନିକଟରେ ନିଜର ଶେଷବକ୍ତବ୍ୟ ପ୍ରକାଶକରିବା ଠିକ୍ ନୁହେଁ। ମୋତେ ଶୀଘ୍ର ଯିବାକୁ ହେବ; କାରଣ ରାଜା ତାଙ୍କର ମନ ପରିବର୍ତ୍ତନ କରିପାରନ୍ତି। ଲଭିକ୍ ଦୁର୍ଗରେ ଜଣେ ଲୋକ ପରିବର୍ତ୍ତରେ ଆଉ ଜଣଙ୍କୁ ରଖିବା ଭାରି କଷ୍ଟକର ବ୍ୟାପାର; ବରଂ ଯେଉଁ ଲୋକ ବନ୍ଦୀ ଅଛି; ତାହାକୁ ରଖିନେବା ସୁବିଧାଜନକ।''

ବିଜୟଦର୍ପରେ ଏମ୍. ଡି. ଟ୍ରିଭିଲ୍ ବନ୍ଦିଶାଳାରେ ପହଞ୍ଚି ଆଥସ୍‌ଙ୍କ ମୁକ୍ତି ସଙ୍ଗେ ସଙ୍ଗେ ହାସଲ କଲେ। ସତେ ଯେପରି କୌଣସି ଘଟଣା ଘଟିନାହିଁ, ଆଥସ୍ ଏପରି ଅଭିନୟ କରି ନିଜ କାପ୍‌ଟେନ୍‌ଙ୍କୁ ପ୍ରଣାମ କଲେ। ଏ ଘଟଣାରେ ବନ୍ଦିଶାଳାର ଅଫିସରଗଣ ଓ ରକ୍ଷୀମାନେ ବିଶେଷ ବିବ୍ରତ ହୋଇପଡୁଥିଲେ।

ତହିଁଆରଦିନ ପ୍ରଭାବରେ ଏମ୍. ଡି. ଟ୍ରିଭିଲ୍ ଦାର୍‌ଦାୟାଁଙ୍କୁ ନିଜ ଦପ୍ତରକୁ ଡକାଇ କହିଲେ, ''ଯୁବକ, ତୁମେ ଏପର୍ଯ୍ୟନ୍ତ ବେଶ୍ ଉତ୍ତୀର୍ଣ୍ଣ ହୋଇପାରିଛ। ଜୁସାକ୍, ବେର୍ଣ୍ଣାଜୋକ୍‌ସ ପ୍ରତିଫଳ ପାଇସାରିଛନ୍ତି। ତେବେ ସାବଧାନ ରହ। ଯଦି ତୁମ ସହିତ କିଏ କଳି କରିବସେ, ତା ସହିତ କଳି କରିବାରୁ ନିବୃତ୍ତ ହୁଅ। ତୁମକୁ କିଏ ଯଦି ଆକ୍ରମଣ କରେ, ତୁମେ ନିଜ ତାର ସମକକ୍ଷ ମନେକରୁଥିଲେ ଯୁଦ୍ଧକର; ନଚେତ୍ ସେଠାରୁ ଚାଲିଯାଅ। ଯଦି କୌଣସି ଘର ତିଆରି ହେଉଥିବାର ବା ମରାମତି ହେଉଥିବାର ଦେଖିବ,

ସେଠାରେ ଉପରକୁ ଚାହଁ, ନଚେତ୍ ତୁମ ଉପରେ ପଥରଟାଏ ପଡ଼ିଯାଇପାରେ। ଯଦି ରାତିରେ ବାହାରେ ଥାଅ, ତାହାହେଲେ ତୁମର ଜଣେ ଲୋକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ କରି ପାଖେ ପାଖେ ରଖିଥାଅ।

## ବଲ୍‌ନୃତ୍ୟର ଚକ୍ରାନ୍ତ

ଆଠଦିନ ପରେ କାର୍ଡିନାଲ୍ ଲଣ୍ଡନରୁ ଖଣ୍ଡିଏ ଚିଠି ପାଇଲେ। ସେଥିରେ ଲେଖାଥିଲା 'ମୁଁ ସେସବୁ ପାଇଛି; କିନ୍ତୁ ଅର୍ଥାଭାବରୁ ଲଣ୍ଡନ ଛାଡ଼ି ଯାଇପାରୁନାହିଁ। ପାଞ୍ଚଶତ ପିସ୍ତୋଲ ପଠାନ୍ତୁ। ଏ ଅର୍ଥ ପାଇବାର ଚାରି ଦିନ ପରେ ମୁଁ ପ୍ୟାରିସ୍‌ରେ ପହଞ୍ଚିବି।'' ଏହି ପତ୍ରରେ ପ୍ରଣତି ନିବେଦନ ବା ସ୍ୱାକ୍ଷର ନଥିଲା। ସେହି ରାତ୍ରି ଶେଷ ହେଲା। ପରଦିନ ପ୍ରଭାତରୁ କାର୍ଡିନାଲ୍ ରାଜାଙ୍କ ସହ ଚେସ୍‌ଖେଳରେ ରାଜାଙ୍କୁ ବେଶ୍ ଖୁସି କରୁଥାନ୍ତି। ସେହି ଅବସରରେ ସେ ରାଜାଙ୍କୁ ବର୍ଷାର୍ଦ୍ଧର ପ୍ରଥମ ବଲ୍‌ନୃତ୍ୟର ବ୍ୟବସ୍ଥା ହୋଇଥିବା କଥା ଜଣାଇଦେଲେ। ପ୍ରଥାନୁଯାୟୀ ଉଭୟ ରାଜା ଓ ରାଣୀ ସର୍ବାଧିକ ସୁନ୍ଦର ପରିବେଶରେ ଉକ୍ତ ବଲ୍‌ନୃତ୍ୟସ୍ଥଳୀରେ ଉପସ୍ଥିତ ରହି ପ୍ରଥମ ନୃତ୍ୟ ଉଦ୍‌ଘାଟନ କରିବାର କଥା।

ରାଜା କହିଲେ, ''କିନ୍ତୁ ବନ୍ଧୁ କାର୍ଡିନାଲ୍, ତୁମେ ଜାଣ ମୁଁ ଏହିସବୁ ଆଡ଼ମ୍ବର ମଉଜ-ମଜଲିସକୁ ଆଦୌ ଭଲପାଏ ନାହିଁ।'' ଆଉ ମଧ୍ୟ ସେ ଜାଣିପାରିଲେ ନାହିଁ ଯେ, ସାଧାରଣତଃ ଉକ୍ତ ବଲ୍‌ନୃତ୍ୟ ଯେଉଁ ସମୟରେ ଆରମ୍ଭ ହେବାକଥା, ତାହାର ଯଥେଷ୍ଟ ପୂର୍ବରୁ ଏହାର ଆୟୋଜନ ହୋଇଥିଲା।

''ଶ୍ରୀହଜୁର, ମହାରାଣୀ ମଧ୍ୟ ହଜୁରଙ୍କ ପ୍ରତି କୃତଜ୍ଞ ରହିବେ। ହଜୁର ଜାଣନ୍ତି, ରାଣୀ ଏହି ନୃତ୍ୟକୁ କେତେ ଭଲପାଆନ୍ତି। ଆଉ ମଧ୍ୟ ରାଣୀଙ୍କ ଜନ୍ମଦିନରେ ଶ୍ରୀହଜୁର ଯେଉଁ ହୀରାଗୁଡ଼ିକ ଉପହାର ଦେଇଥିଲେ, ସେସବୁ ପରିଧାନ ପାଇଁ ସେ ସୁଯୋଗ ଲାଭ କରିବେ। ଏପର୍ଯ୍ୟନ୍ତ ମହାରାଣୀ ତାହା କରିବାକୁ ସୁଯୋଗ ପାଇନାହାନ୍ତି।'' ଏହି କଥାଗୁଡ଼ିକ କାର୍ଡିନାଲ୍ ବେଶ୍ ଚତୁରତା ସହ ରାଜାଙ୍କୁ କହିଲେ।

''ଆଚ୍ଛା, ଏହି ବଲ୍‌ନୃତ୍ୟ କେବେ ଅନୁଷ୍ଠିତ ହେବ ?''

କାର୍ଡିନାଲ୍ ଅଳ୍ପ ସମୟ ପାଇଁ ଚୁପ୍ ରହିଲେ; କାରଣ ସେ ଏ ବିଷୟ ମନେ ମନେ ଚିନ୍ତା କରୁଥିଲେ। ଅର୍ଥ ପାଇବାର ଚାରି ପାଞ୍ଚ

ଦିନ ପରେ ମିଲେଡ଼ି ଏଠାରେ ପହଞ୍ଚିବ। ତା'ଛଡ଼ା କୌଣସି ପ୍ରକାର ଝଡ଼ତୋଫାନ, ଦୁର୍ଘଟଣା ଏବଂ ଉକ୍ତ ସ୍ତ୍ରୀଲୋକର ହଠାତ୍ ମାନସିକ ପରିବର୍ତ୍ତନର ସମ୍ଭାବନା ବି ରହିଛି। ଅତଏବ, ବାରଦିନ ହେଲେ ସୁବିଧା ହେବ।

ରାଜା କହିଲେ, "ଆଚ୍ଛା, ଆପଣ କଣ ଆପଣଙ୍କ ହିସାବ ଶେଷ କଲେ ?"

"ହଁ ହଜୁର, ଆଜି ସେପ୍ଟେମ୍ବର ମାସର ୨୦ ତାରିଖ। ସମସ୍ତ ଆୟୋଜନ ୧୨ ଦିନ ମଧ୍ୟରେ ଶେଷ ହୋଇଯିବ। ତେଣୁ ଏହି ବଲ୍‌ନୃତ୍ୟ ଅକ୍ଟୋବର ୩ ତାରିଖରେ ଅନୁଷ୍ଠିତ ହେବ।"

ରାଜା କହିଲେ, "ଆଚ୍ଛା, ମୁଁ ଆସନ୍ତାକାଲି ସକାଳେ ରାଣୀଙ୍କୁ ଏ କଥା କହିବି।"

କାର୍ଡିନାଲ୍ ଲକ୍ଷ୍ୟ କଲେ ଯେ, ରାଜାଙ୍କର ଉକ୍ତ ବଲ୍‌ନୃତ୍ୟ ପ୍ରତି ଆଦୌ ଆଗ୍ରହ ନାହିଁ। ତେଣୁ ଅଧଘଣ୍ଟାକ ପରେ ସେ ଯିବାପାଇଁ ରାଜାଙ୍କ ଅନୁମତି ଭିକ୍ଷା କଲେ। ସେ ଘର ଛାଡ଼ି ଯିବାର ଅବ୍ୟବହିତ ପୂର୍ବରୁ କହିଲେ, "ଶ୍ରୀହଜୁରଙ୍କର ମୁଁ ଆଉ ଥରେ ମନେପକାଇ ଦେଉଛି ଯେ, ସାରା ପ୍ୟାରିସ୍ ନଗରୀ ଚାହେଁ, ରାଣୀ ଉକ୍ତ ହୀରାଗୁଡ଼ିକ ପରିଧାନ କରି ଦର୍ଶନ ଦିଅନ୍ତୁ।"

ତ୍ରୟୋଦଶ ଲୁଇ ଲକ୍ଷ୍ୟ କଲେ ଯେ, ସେହି ସଂଧ୍ୟାରେ କାର୍ଡିନାଲ୍ ଉକ୍ତ ହୀରା ବିଷୟରେ ଦୁଇଥର କହିଛନ୍ତି। ସେ ଅନୁମାନ କରିନେଲେ, ଏଥିରେ କାର୍ଡିନାଲ୍‌ଙ୍କର କୌଣସି ବ୍ୟକ୍ତିଗତ କାରଣ ନିହିତ ଅଛି; ହୁଏତ କୌଣସି ଚତୁରତା ବି ଥାଇପାରେ। ଯାହା ହେଉ, ତହିଁଆରଦିନ ରାଜା ରାଣୀଙ୍କୁ ଏହି ବଲ୍‌ନୃତ୍ୟ କଥା କହିଲେ। ସେ କହିଲେ, "ଏହି ଉତ୍ସବର ସଫଳତା ପାଇଁ ଆମ ଦୁହିଁଙ୍କୁ ସେଦିନ ଉପଯୁକ୍ତ ପୋଷାକ ପରିଧାନ କରି ଉପସ୍ଥିତ ହେବାକୁ ହେବ। ମୁଁ ଭାବୁଛି, ମୁଁ ତୁମକୁ ଯେଉଁ ହୀରାତକ ତୁମ ଜନ୍ମଦିନରେ ଉପହାର ଦେଇଥିଲି, ତାହା ତୁମେ ପରିଧାନ କରିବ।"

ରାଣୀ କାବା ହୋଇଗଲେ। ତାଙ୍କ ହୃଦୟରେ ଭୟର ସଞ୍ଚାର ହେଲା। ସେ ରାଜାଙ୍କୁ ଚାହିଁ ନୀରବରେ ଛିଡ଼ା ହୋଇ ରହିଲେ। ରାଜା ଟିକିଏ ଅପେକ୍ଷାକୃତ ଚଢ଼ାଗଳାରେ କହିଲେ, "ମୋ କଥା ଶୁଣିଲ ତ ରାଣୀ !" ସେ ନୀରବ ରହିବାଟା ରାଜାଙ୍କ ପ୍ରତି ଯେପରି ଅବମାନନା ହେଲା। ରାଣୀ ଧୀରଗଳାରେ ଉତ୍ତର ଦେଲେ, "ମହାରାଜ, ବଲ୍‌ନୃତ୍ୟ କେବେ ହେବ ?" ସେ ଅନୁଭବ କଲେ ଯେ, ତାଙ୍କୁ କିଛି ହେଲେ କଥା କହିବାକୁ

ହେବ; ତେଣୁ ଏହି ପ୍ରଶ୍ନଟି ସେ ଉତ୍‌ଥାପନ କଲେ। ରାଜା ଉତ୍ତର କଲେ, ''ହଁ, ଖୁବ୍ ନିକଟରେ। ମୁଁ ଠିକ୍ ତାରିଖ ଜାଣିନାହିଁ। କାର୍ଡିନାଲଙ୍କୁ ପଚାରିବି।'' ରାଣୀ ସଙ୍ଗେ ସଙ୍ଗେ ଉତ୍ତର ଦେଲେ, ''ତାହାହେଲେ କାର୍ଡିନାଲ୍ ଏହି ବଲ୍‌ନୃତ୍ୟର ଆୟୋଜନ କରୁଛନ୍ତି ?

ରାଣୀଙ୍କର ହଠାତ୍ ଏପରି ଆଗ୍ରହ ଦେଖି ରାଜା ଟିକିଏ ବିସ୍ମିତ ହେଲେ ଓ କହିଲେ, ''ହଁ, ତେବେ ପଚାରୁଛ କାହିଁକି ?'' ମୁଁ ଉକ୍ତ ହୀରା ଅଳଙ୍କାର ପରିଧାନ କରି ଉକ୍ତ ଉତ୍ସବରେ ଯୋଗଦାନ କରିବା ବିଷୟ ମଧ୍ୟ ସେ ଉଠେଇଛନ୍ତି ?''

''ଆଚ୍ଛା, ସେ ଯଦି କରିଥାନ୍ତି, ତାଙ୍କ ଅନୁରୋଧରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?''

''ନା ମହାରାଜ !''

ରାଜା ସେ କୋଠରି ଛାଡ଼ି ଚାଲିଯିବା ସମୟରେ ପୁଣି ପ୍ରଶ୍ନ କଲେ, ''ତାହାହେଲେ ନୃତ୍ୟ ଦିନ ତୁମେ ସେହି ହୀରା ଅଳଙ୍କାର ପରିଧାନ କରିବ ?''

''ହଁ, ମହାରାଜ !''

''ରାଣୀ ସାଧାରଣ ସୌଜନ୍ୟ ପ୍ରକାଶ ପାଇଁ ଟିକିଏ ନଇଁପଡ଼ିଲେ। ସେ ଅନୁଭବ କଲେ ସତେ ଯେପରି ତାଙ୍କର ବଳ କମିଯାଇଛି।''

## ରାଣୀ ଆନ୍

ରାଣୀ ଆଣ୍ଠୁମାଡ଼ି ବସିପଡ଼ିଲେ ଏବଂ ତାଙ୍କ ଦୁଇ ପାପୁଲିରେ ନିଜର ମୁହଁ ଲୁଚାଇଲେ। ସେ ଅତି ବ୍ୟସ୍ତ ହୋଇ କହିଲେ, ''ମୁଁ ମରିଗଲି; କାର୍ଡିନାଲ୍ ସବୁ ବିଷୟ ଜାଣେ। ରାଜା କିଛି ଜାଣନ୍ତି ନାହିଁ; ମାତ୍ର ଯଥାଶୀଘ୍ର ସବୁକଥା ଜାଣିଯିବେ। ହେ ଭଗବାନ, ମୁଁ ମରିଗଲି !''

ବାସ୍ତବରେ ତାଙ୍କ ଅବସ୍ଥା ବିଶେଷ ଶୋଚନୀୟ ଥିଲା। ବକିଙ୍ଗହାମ୍ ଥିଲେ ଇଂଲଣ୍ଡରେ ଓ ତାଙ୍କର ଏକମାତ୍ର ବନ୍ଧୁ ଡଚେସ୍ ଡ଼ି. ଚେଭରୁଜ୍ ଭ୍ରମଣରେ ଥିଲେ। କାର୍ଡିନାଲଙ୍କ ଗୁପ୍ତଚରମାନଙ୍କ ଦ୍ୱାରା ପରିବେଷ୍ଟିତା ହୋଇ ରାଣୀ କାହାକୁ ବିଶ୍ୱାସ କରିପାରୁନଥିଲେ। ଲାପୋର୍ଟ ଯଦି ଦିନକରୁ ଅଧିକ ଲୋଭର୍ ପ୍ରାସାଦ ଛାଡ଼ି ବାହାରେ ରହୁଥିଲେ, ତାହାହେଲେ ସନ୍ଦେହ କରାଯାଉଥିଲା। ଏହିପରି ଦୁରବସ୍ଥାଯୋଗୁଁ ରାଣୀ ବିଳାପ କରିବାକୁ ଲାଗିଲେ।

ଏହି ସମୟରେ ଏକ ଧୀର ଶାନ୍ତ ସ୍ୱର ଭାସିଆସିଲା, ''ରାଣୀମା, ମୁଁ ଶ୍ରୀହଜୁରଙ୍କର କିଛି କାମରେ ଲାଗିପାରେ କି ?''

ରାଣୀ ଆଶ୍ଚର୍ଯ୍ୟରେ ମଥା ଉତ୍ତୋଳନ କଲେ। ସେ ଯାହାହେଉ ପଛେ, ଉକ୍ତ ସ୍ୱର ନିଶ୍ଚୟ କୌଣସି ବନ୍ଧୁଙ୍କର। ଦରଜା ନିକଟରେ ମାଡାମ୍ ବୋନାସିଏକ୍ସ ଛିଡ଼ାହୋଇଥିଲେ। ପାଖ କୋଠରିରେ ରାଣୀଙ୍କ ପୋଷାକପତ୍ର ସଜାଡ଼ି ରଖୁଥିବା ସମୟରେ ରାଜା ଓ ରାଣୀଙ୍କ ମଧ୍ୟରେ ଘଟିଥିବା ସମସ୍ତ କଥାବାର୍ତ୍ତା ସେ ଶୁଣିପାରିଥିଲେ। ମାଡାମ୍ ବୋନାସିଏକ୍ସଙ୍କ ଆଖିରୁ ଲୁହଧାର ଛୁଟିଗଲା। ସେ କହିଲେ, ''ଶ୍ରୀହଜୁର ଭୟ କରନ୍ତୁ ନାହିଁ! ମୁଁ ଯେତେ କ୍ଷୁଦ୍ର ହେଲେ ମଧ, ଶ୍ରୀହଜୁରଙ୍କ ସେବକ-ସେବିକାମାନଙ୍କ ମଧ୍ୟରେ ମୋର ସ୍ଥାନ ଯେତେ କ୍ଷୁଦ୍ର ହେଲେ ମଧ ଶ୍ରୀହଜୁରଙ୍କୁ ଏହି ଅସୁବିଧାରୁ ଉଦ୍ଧାର କରିବା ପାଇଁ ମୋତେ ଗୋଟିଏ ଉପାୟ ଜଣାଅଛି।''

ରାଣୀ କହିଲେ, ''ତୁମେ ମୋର ଆଖିକୁ ସିଧା ଚାହିଁଲ। ମୁଁ ସବୁଆଡୁ ହତାଶହୋଇଛି। ତୁମକୁ କଣ ବିଶ୍ୱାସ କରିପାରେ ?'' ଯୁବତୀଜଣକ ରାଣୀଙ୍କ ସମ୍ମୁଖରେ ଆଣ୍ଠୁମାଡ଼ି ବସିପଡ଼ି କହିଲେ, ''ରାଣୀମା, ମୁଁ ମୋ ଅନ୍ତରାତ୍ମାକୁ ସାକ୍ଷୀ ରଖି କହୁଛି, ମୁଁ ଶ୍ରୀହଜୁରଙ୍କ ପାଇଁ ମୋର ଜୀବନ ଉତ୍ସର୍ଗ କରିବାଲାଗି ପ୍ରସ୍ତୁତ ଅଛି। ଆପଣଙ୍କ ଚତୁର୍ଦ୍ଦିଗରେ କେବଳ ପ୍ରତାରକଗଣ ରହିଛନ୍ତି; ମାତ୍ର ମୁଁ କହିପାରେ ଯେ, ମୁଁ ଶ୍ରୀହଜୁରଙ୍କ ପ୍ରତି ଯେତିକି ବିଶ୍ୱସ୍ତ, ଏପରି କେହି ନୁହନ୍ତି। ଶ୍ରୀହଜୁର ବକିଂହାମ୍ ଡ୍ୟୁକ୍‌କୁ ଏକ ଛୋଟ ବାକ୍ସରେ ରଖି ହୀରାଗୁଡ଼ିକ ଦେଇଦେଇଛନ୍ତି – ଏହା କ'ଣ ସତ୍ୟ ନୁହେଁ ?''

ଭୟରେ ହତଭାଗିନୀ ରାଣୀଙ୍କର ଦାନ୍ତକୁ ଦାନ୍ତ ବାଜୁଥିଲା। ସେ କହିଲେ, ''ହେ ଭଗବାନ।''

''ବର୍ତ୍ତମାନ ସେହି ହୀରାଗୁଡ଼ିକୁ ଫେରାଇଆଣିବାହିଁ ଏକମାତ୍ର ଉପାୟ।''

ରାଣୀ କହିଉଠିଲେ, ''ହଁ-ହଁ, କିନ୍ତୁ କିପରି ? ଏହା କିପରି ବା ସମ୍ଭବ ହୋଇପାରିବ ?''

''ଏହି ସଙ୍ଗେ ସଙ୍ଗେ କାହାକୁ ହେଲେ ଡ୍ୟୁକ୍‌ଙ୍କ ପାଖକୁ ପଠାଇବାକୁ ହେବ।''

''କିନ୍ତୁ କିଏ ଯିବ ? କାହାକୁ ବିଶ୍ୱାସ ଅଛି ?''

''ରାଣୀମା, ମୋଠାରେ ବିଶ୍ୱାସ ସ୍ଥାପନ କରନ୍ତୁ। ମୋତେ ଆଦେଶ ଦିଅନ୍ତୁ। ମୁଁ ଜଣେ ବାର୍ତ୍ତାବହର ବ୍ୟବସ୍ଥା କରିବି।''

''କିନ୍ତୁ ମୋତେ ଗୋଟିଏ ଚିଠି ଲେଖିଦେବାକୁ ହେବ।''

''ହଁ, ତା' ତ ଦରକାର। ଶ୍ରୀହଜୁରଙ୍କ ହସ୍ତାକ୍ଷର ଓ ସିଲ୍ ମୋହର ଯଥେଷ୍ଟ ହେବ।''

''କିନ୍ତୁ ସେହି କେତେ ପଦ କଥା ମୋର ପତନ, ଧ୍ୱଂସ, ଛାଡ଼ପତ୍ର କିମ୍ବା ନିର୍ବାସନ ଆଣିଦେଇପାରେ।''

''ତା' ସତ— ଯଦି ପତ୍ରଖଣ୍ଡିକ କୌଣସି ଦୁଷ୍ଟଲୋକ ହାତରେ ପଡ଼େ। କିନ୍ତୁ ସେ ଦାୟିତ୍ୱ ମୋର; ଓ ସେଥିପାଇଁ ମୁଁ ଦାୟୀ ହେବି।''

ରାଣୀ ଯୁକ୍ତି ବାଢ଼ିଲେ, ''କିନ୍ତୁ କିପରି ? କହ, କିପରି ?''

''ମୋ ସ୍ୱାମୀ ଜଣେ ସାଧୁ ଓ ଉତ୍ତମ ବ୍ୟକ୍ତି ଏବଂ ମୁଁ ତାଙ୍କୁ ଯାହା କହିବି, ସେ ନିଶ୍ଚୟ କରିବେ। ସେ ଚିଠିରେ କଣ ଲେଖାଅଛି ବା ତାହା କିଏ ଲେଖିଛି ସେ କଥା ନ ଭାବି କେବଳ ମୋର ଅନୁରୋଧ ରକ୍ଷାକରି ସେ ଇଂଲଣ୍ଡ ଯାତ୍ରାକରିବେ। ଖାମ୍ ଉପରେ ଥିବା ଠିକଣାରେ ସେ ଉକ୍ତ ପତ୍ର ଦେବେ ଏବଂ ଇଂଲଣ୍ଡରେ ତାଙ୍କ ହାତରେ ଯାହା ଦିଆଯିବ, ତାହା ସେ ସିଧା ଆଣି ମୋ ହାତରେ ଦେବେ।''

ରାଣୀ ମାଡାମ୍ ବୋନାସିଏକ୍ସଙ୍କୁ ଦୁଇ ବାହୁ ମଧ୍ୟରେ ବେଷ୍ଟନ କଲେ ଓ ଅତି ସ୍ନେହରେ କିଛି ସମୟ ପାଇଁ ତାଙ୍କୁ ଧରିରଖିଲେ। ରାଣୀ କହିଲେ, ''ତୁମେ ଯଦି ତାହା କରିପାରିବ, ତୁମେ ଯେ କେବଳ ମୋର ସମ୍ମାନ ରକ୍ଷାକରିବ ତାହା ନୁହେଁ; ମୋର ଜୀବନ ମଧ୍ୟ ରକ୍ଷାକରିବ।''

''ମୋତେ ତାହାହେଲେ ପତ୍ରଖଣ୍ଡିକ ଦିଅନ୍ତୁ। ସମୟ ବହୁତ କମ୍।''

ରାଣୀ ପାଖରେ ଥିବା ଗୋଟିଏ ଟେବୁଲ ପାଖକୁ ଯାଇ ପତ୍ରଖଣ୍ଡିଏ ଲେଖିଲେ। ପତ୍ରଖଣ୍ଡିକ ଲଫାଫା ଭିତରେ ରଖି ତାହାକୁ ଜଉମୁଦ ଦେଉ ଦେଉ ସେ କହିଲେ, ''ତୁମେ ଗୋଟିଏ ଅତି ଜରୁରୀ କଥା ଭୁଲିଯାଉଛ।''

ମାଡାମ୍ ବୋନାସିଏକ୍ସ ଟିକିଏ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, ''କି କଥା ହଜୁର ?''

''ଅର୍ଥ !''

''ହଁ ଶ୍ରୀହଜୁର, ତା' ତ ସତ। ମୁଁ ଏ କଥା ସ୍ୱୀକାର କରୁଛି ଯେ, ମୋର ସ୍ୱାମୀ ଟିକିଏ—''

''ମାନେ ତାଙ୍କର ଅର୍ଥ ନାହିଁ— ଏଇଆ ତ କହିବାକୁ ଯାଉଛ ?''

''ତାଙ୍କର ଅର୍ଥ ଅଛି; କିନ୍ତୁ ସେ ଟିକିଏ କୃପଣ। ତଥାପି ମୁଁ ଏଥିପାଇଁ ତାଙ୍କୁ ପ୍ରବର୍ତ୍ତାଇପାରିବି।''

ରାଣୀ ଦୁଃଖରେ କହିଲେ, ''ମୋର ଅର୍ଥ ନାହିଁ; କିନ୍ତୁ ଏହି ମୁଦିଟି

ମୂଲ୍ୟବାନ୍। ମୋ ଭାଇ ସ୍ପେନ୍‌ର ରାଜା ଏହା ମୋତେ ଦେଇଥିଲେ। ତେଣୁ ଏହା ମୋର ଓ ମୁଁ ଏହାକୁ ମୋ ଇଚ୍ଛା ମୁତାବକ ବ୍ୟବହାର କରିପାରେ। ଏହାକୁ ତୁମେ ନିଅ, ବିକ୍ରୟ କର ଏବଂ ସେହି ଅର୍ଥ ତୁମର ସ୍ୱାମୀ ଖର୍ଚ୍ଚ କରନ୍ତୁ।''

''ମୁଁ ବର୍ତ୍ତମାନ ତାଙ୍କ ପାଖକୁ ଚାଲିଲି।''

ରାଣୀ ଅତି ଧୀରଭାବରେ କହିଲେ–

''ବକିଙ୍ଗହାମ୍ ଡ୍ୟୁକ୍ ପାଇବେ, ଲଣ୍ଡନ।'' ମାଡାମ୍ ବୋନାସିଏକ୍ସ ରାଣୀଙ୍କ ହାତ ଚୁମ୍ବନ କଲେ ଓ ତାଙ୍କ ପୋଷାକ ଭିତରେ ପତ୍ରଖଣ୍ଡି ଲୁଚାଇ ରଖି ଯଥାଶୀଘ୍ର ସେହି ସ୍ଥାନ ଛାଡ଼ିଲେ।

## ବୋନାସିଏକ୍ସ ନିର୍ବୋଧ ନୁହେଁ

ଅଧଘଣ୍ଟାକ ମଧ୍ୟରେ ମାଡାମ୍ ବୋନାସିଏକ୍ସ ନିଜ ଘରେ ପହଞ୍ଚିଲେ। ବାଷ୍ଟାଇଲ ଦୁର୍ଗରୁ ମୁକ୍ତ ହେଲା ପରଠାରୁ ସ୍ୱାମୀଙ୍କ ସହିତ ତାଙ୍କର ସାକ୍ଷାତ୍ ହୋଇ ନଥିଲା। ତେଣୁ କାର୍ଡିନାଲ୍‌ଙ୍କ ବିଷୟରେ ସ୍ୱାମୀଙ୍କର ଯେଉଁ ମାନସିକ ପରିବର୍ତ୍ତନ ଘଟିଥିଲା, ସେ ବିଷୟ ମାଡାମ୍ ବୋନାସିଏକ୍ସ ଆଦୌ ଜାଣି ନଥିଲେ। ମାଡାମ୍ ବୋନାସିଏକ୍ସ ଦେଖିଲେ ଯେ, ତାଙ୍କ ସ୍ୱାମୀ ଘରକୁ ସଜଡ଼ାସଜଡ଼ି କରିବାକୁ ଚେଷ୍ଟା କରୁଛନ୍ତି। ବହୁ ଆସବାବପତ୍ର ଭାଙ୍ଗିରୁଜିଯାଇଥିଲା ଓ କାଚ ଆଲମିରାଗୁଡ଼ିକ ବିଶେଷ ବିଶୃଙ୍ଖଳିତ ଅବସ୍ଥାରେ ଥିଲା। ତାଙ୍କ ଚାକରାଣୀ ଗୃହମାଲିକଙ୍କର ଗ୍ରେପ୍ତାରି ପରେ ଭୟରେ ଚାଲିଯାଇଥିଲା ଓ ଆଉ ଫେରି ନଥିଲା। ବୋନାସିଏକ୍ସ ନିଜ ସ୍ତ୍ରୀଙ୍କୁ ଦେଖି ବେଶ୍ ଖୁସି ହୋଇ ସ୍ନେହରେ ଆଲିଙ୍ଗନ କଲେ। ସେ କିନ୍ତୁ ବିଶେଷ ଚିନ୍ତିତ ଥିଲାପରି ଜଣାଯାଉଥିଲେ। କେତେକ ସମୟ ପର୍ଯ୍ୟନ୍ତ ତାଙ୍କୁ କିପରି ଘରୁ ଟେକିନିଆଯାଇଥିଲା ଓ ବାଷ୍ଟାଇଲ୍ ଦୁର୍ଗରେ ବୋନାସିଏକ୍ସ କି କଷ୍ଟରେ ଥିଲେ, ସେ ବିଷୟରେ ଆଲୋଚନା ଚାଲିଲା। ତା'ପରେ ମାଡାମ୍ ବୋନାସିଏକ୍ସ ସ୍ୱାମୀଙ୍କୁ ରାଣୀଙ୍କ କାମରେ ଲଗାଇବା ମତଲବରେ ସେ କିପରି ଅଧିକରୁ ଅଧିକ ଅର୍ଥ ପାଇପାରିବେ ସେ ବିଷୟ ଉତ୍‌ଥାପନ କଲେ। ସେ ଯାହା କହିବେ, କେବଳ ସେତିକି କଥା ତାଙ୍କୁ ମାନିବାକୁ ହେବ। ସେ ଭାବିଲେ ଯେ, କେବଳ ଟଙ୍କାପଇସା ପ୍ରଲୋଭନ ଦେଖାଇ ସେ ତାଙ୍କ ସ୍ୱାମୀଙ୍କୁ

ଲଣ୍ଡନ ଯିବାକୁ ସହଜରେ ରାଜି କରିପାରିବେ; କିନ୍ତୁ କାର୍ଡିନାଲ୍‌ଙ୍କ ସହିତ ମାତ୍ର ଦଶ ମିନିଟ୍ କଥାବାର୍ତ୍ତା କରିବାରେ ବୋନାସିଏକ୍ସ ଯେ ବଦଳିଯାଇଛନ୍ତି, ସେ କଥା ତାଙ୍କୁ ଜଣାନଥିଲା । ବୋନାସିଏକ୍ସ ତାଙ୍କ ହାତ ମକଚି ମକଚି କହିଲେ, ''ବହୁତ ଅର୍ଥ ! କେତେ ?''

''ଏକ ହଜାର ବା ତା'ଠାରୁ କିଛି ଅଧିକ ପିସ୍ତୋଲ ।''

''ଏ ସବୁ ଅର୍ଥ ପାଇବାକୁ ହେଲେ ମୋତେ କଅଣ କରିବାକୁ ହେବ ? ବେଶ୍ ଗୁରୁତର କଥା ତ !''

''ତୁମକୁ ଖଣ୍ଡିଏ ଜରୁରୀ ପତ୍ର ନେଇ ସଙ୍ଗେ ସଙ୍ଗେ ଲଣ୍ଡନ ଯିବାକୁ ହେବ ଏବଂ ଖାମ୍ ଉପରେ ଲେଖାଯାଇଥିବା ବ୍ୟକ୍ତିଙ୍କ ଠିକଣାରେ ଏ ପତ୍ରଖଣ୍ଡିକ ଦେବାକୁ ହେବ ।''

''ଲଣ୍ଡନ ? ମୋର ଲଣ୍ଡନରେ କିଛି କାମ ନାହିଁ ତ ?''

''ଶୁଣ, ଜଣେ ବିଶିଷ୍ଟ ବ୍ୟକ୍ତି ତୁମକୁ ପଠାଉଛନ୍ତି, ଆଉ ଜଣେ ବିଶିଷ୍ଟ ବ୍ୟକ୍ତି ମଧ୍ୟ ତୁମକୁ ଅପେକ୍ଷା କରି ବସିଛନ୍ତି । ଆଉ ତୁମେ ଯେତିକି ଆଶା କରୁଛ, ତା ଅପେକ୍ଷା ଯଥେଷ୍ଟ ବେଶି କିଛି ଲାଭ ପାଇବ— ଏକଥା ମୁଁ ଶପଥ କରି କହୁଛି ।''

''ଷଡ଼ଯନ୍ତ୍ର ! ଚକ୍ରାନ୍ତ ! ଖାଲି ଚକ୍ରାନ୍ତ ! କନ୍‌ଷ୍ଟାନ୍‌ସ, ତୁମକୁ ଧନ୍ୟବାଦ । କାର୍ଡିନାଲ୍ ମୋ ଆଖି ଖୋଲିଦେଇଛନ୍ତି ।''

ମାଡାମ୍ ବୋନାସିଏକ୍ସ ଆଶ୍ଚର୍ଯ୍ୟ ହୋଇ ଚିତ୍କାର କରିଉଠିଲେ, ''କାର୍ଡିନାଲ୍ ? ତୁମେ କଣ କାର୍ଡିନାଲ୍‌ଙ୍କ ସହ ସାକ୍ଷାତ୍ କରିଛ ?'' ବୋନାସିଏକ୍ସ ଉତ୍ତର ଦେଲେ, ''ନିଶ୍ଚୟ । ସେ ମୋତେ ଡାକିପଠାଇଥିଲେ । ସେ ମୋ କାନ୍ଧକୁ ଛୁଇଁଛନ୍ତି ଓ ମୋତେ 'ପ୍ରିୟ ବନ୍ଧୁ ବୋନାସିଏକ୍ସ' ବୋଲି କହିଛନ୍ତି । କନ୍‌ଷ୍ଟାନ୍‌ସ, ତୁମେ ଜାଣନା, ମୁଁ ବର୍ତ୍ତମାନ ସେହି ମହାନ୍ କାର୍ଡିନାଲ୍‌ଙ୍କ ବନ୍ଧୁ ।''

କନ୍‌ଷ୍ଟାନ୍‌ସ କହିଲେ, ''ତାହାହେଲେ ତୁମେ ବର୍ତ୍ତମାନ କାର୍ଡିନାଲ୍‌ଙ୍କ ଦଳଭୁକ୍ତ ! ଯେଉଁମାନେ ତୁମ ସ୍ତ୍ରୀଙ୍କ ପ୍ରତି ଅମର୍ଯ୍ୟାଦା କରନ୍ତି, ତୁମେ ସେହିମାନଙ୍କ ସେବାରତ । ଆଉ ସେମାନେ ପୁଣି ରାଣୀଙ୍କ ବିରୁଦ୍ଧରେ ଚକ୍ରାନ୍ତ କରନ୍ତି ।''

ରୋଚଫୋର୍ଟ ଗୋଟିଏ କଥା କହିଥିଲେ ଓ ବୋନାସିଏକ୍ସ ତାହା ମନେରଖିଥିଲେ । ବର୍ତ୍ତମାନ ସେହି କଥାଟି ସେ ତାଙ୍କ ସ୍ତ୍ରୀଙ୍କୁ କହିଲେ— ''ରାଜ୍ୟର ସ୍ୱାର୍ଥ ନିକଟରେ ବ୍ୟକ୍ତିଗତ ସ୍ୱାର୍ଥ କିଛି ନୁହେଁ ।'' କନ୍‌ଷ୍ଟାନ୍‌ସ କହିଲେ, ''ତୁମେ ରାଷ୍ଟ୍ର ବିଷୟରେ କ'ଣ ଜାଣ ? ଜଣେ ସାଧାରଣ

ଲୋକର ଜୀବନ-ଯାପନ କରି ସନ୍ତୁଷ୍ଟ ହୁଅ; ବରଂ ଯେଉଁ ପକ୍ଷ ତୁମକୁ ଅଧିକ ସୁବିଧା ଦେଇଛି, ତାକୁ ସମର୍ଥନ କର।''

କାର୍ଡିନାଲ୍ ତାଙ୍କୁ ଯେଉଁ ଥଳିକ ଅର୍ଥ ପ୍ରଦାନ କରିଥିଲେ, ଆଲମିରା ଭିତରୁ ତାହା କାଢ଼ି ଦେଖାଇ ବୋନାସିଏକ୍ସ କହିଲେ, ''ଏହାକୁ ଦେଖି ତୁମେ କଣ ଭାବୁଛ? କାର୍ଡିନାଲ୍ ଓ କାଉଣ୍ଟ ଡି. ରୋଚଫୋର୍ଟ ମୋତେ ଏହା ଉପହାର ଦେଇଛନ୍ତି।'' କନ୍‌ଷ୍ଟାନ୍‌ସ ଚିତ୍କାର୍ କରିଉଠିଲେ, ''କଣ ହେଲା! ସେ ଲୋକଠାରୁ ତୁମେ ଅର୍ଥ ଗ୍ରହଣ କରିଛ? ସେଇ ବ୍ୟକ୍ତି ମୋତେ ନେଇ ରାଣୀଙ୍କ ବିରୁଦ୍ଧରେ ବ୍ୟବହାର କରୁଥିଲା। ସେ ରାଣୀଙ୍କ ସମ୍ମାନ, ଏପରିକି ତାଙ୍କ ଜୀବନ ନଷ୍ଟ କରିବାପର୍ଯ୍ୟନ୍ତ ଚେଷ୍ଟା କରିଥିଲା।''

ରୋଚଫୋର୍ଟଙ୍କର ଆଉ ଗୋଟିଏ ଉକ୍ତି ଉଦ୍ଧାର କରି ବୋନାସିଏକ୍ସ କହିଲେ, ''କନ୍‌ଷ୍ଟାନ୍‌ସ, ତୁମ ରାଣୀ ଜଣେ ସ୍ପେନୀୟ ରମଣୀ; ସେ ଘୃଣିତା। ଆଉ କାର୍ଡିନାଲ୍ ଯାହା କିଛି କରୁଛନ୍ତି, ସବୁ କିଛି ଦେଶର ମଙ୍ଗଳପାଇଁ।'' ଶ୍ରୀମତୀ ବୋନାସିଏକ୍ସ କ୍ରୋଧ ଓ ହତାଶାରେ ଅଧୀରା ହୋଇ ତାଙ୍କ ପାଦ କଚାଡ଼ିବାକୁ ଲାଗିଲେ। ସେ କହିଲେ, ''ଆଚ୍ଛା, ତୁମେ ଯଦି ଚିଠି ନେଇ ଲଣ୍ଡନକୁ ନ ଯାଅ, ତାହାହେଲେ ମୁଁ ରାଣୀଙ୍କୁ କହି ତାଙ୍କ ଆଦେଶରେ ତୁମକୁ ଗିରଫ କରାଇବି। ଯେଉଁ ବାଷ୍ଟାଇଲକୁ ତୁମେ ଏତେ ଘୃଣା କର, ସେହି ଦୁର୍ଗକୁ ତୁମକୁ ପଠାଇଦିଆଯିବ।''

ବୋନାସିଏକ୍ସ ନିଜ ସ୍ତ୍ରୀକୁ ଏତେ ରାଗିବାର କେବେ ଦେଖି ନଥିଲେ। ମୁହୂର୍ତ୍ତକ ପାଇଁ ତାଙ୍କ ପାଟିରୁ କଥା ବାହାରିଲା ନାହିଁ। ସେ ମନେ ମନେ ରାଣୀଙ୍କର ତଥା କାର୍ଡିନାଲ୍‌ଙ୍କ କ୍ରୋଧ ଉଭୟ ମଧ୍ୟରେ ଓଜନ କରୁଥିଲେ। କାର୍ଡିନାଲ୍‌ଙ୍କ କ୍ରୋଧ ଅବଶ୍ୟ ଅଧିକ ଓଜନିଆ ମନେହେଲା। ସେ ଚିତ୍କାର କରିଉଠିଲେ, ''ରାଣୀଙ୍କ ଆଦେଶରେ ମୋତେ ଗିରଫ କର ଏବଂ ମୁଁ କାର୍ଡିନାଲ୍‌କୁ ଏ କଥା ଜଣାଇବି।'' କନ୍‌ଷ୍ଟାନ୍‌ସଙ୍କ ମନରେ ଭୟ ହେଲା ଯେ, ତାଙ୍କ ନିର୍ବୋଧ ସ୍ୱାମୀଙ୍କ ଆଗରେ ସେ ଗୁଡ଼ାଏ କଥା କହିପକାଇଛନ୍ତି। ଯେତେ ମଧୁର ଭାବରେ ପାରନ୍ତି ସେ ତାଙ୍କ ସ୍ୱାମୀଙ୍କୁ କହିଲେ, ''ଛାଡ଼, ସେସବୁ କଥା ଥାଉ। ତୁମେ ନ ଯିବାକୁ କହି ଠିକ୍ କରିଛ।''

ବୋନାସିଏକ୍ସ ବେଶ୍ ଚତୁରତାସହକାରେ ପୁଣି କହିବାକୁ ଲାଗିଲେ, ''ଅନ୍ତତଃ ମୋତେ ତୁମର କହିବାର କଥା ଯେ, ମୁଁ ଲଣ୍ଡନ ଯାଇ ସେଠାରେ କ'ଣ କରିବି।'' ତାଙ୍କ ସ୍ତ୍ରୀଙ୍କର ସମସ୍ତ ଗୁପ୍ତତଥ୍ୟ ଆବିଷ୍କାର କରିବାପାଇଁ କାଉଣ୍ଟ ଡି. ରୋଚଫୋର୍ଟ ତାଙ୍କୁ କହିଥିଲେ ଓ ସେକଥା

ତାଙ୍କର ମନେପଡ଼ିଯାଇଥିଲା । ଆଉ ମଧ୍ୟ ରାଜପ୍ରାସାଦରେ କଣ ସବୁ ଘଟୁଥିଲା, ଉକ୍ତ ବିଷୟ ତାଙ୍କ ସ୍ତ୍ରୀଙ୍କଠାରୁ ଜାଣିବାପାଇଁ ତାଙ୍କୁ କୁହାହୋଇଥିଲା । ତେଣୁ ଚତୁରତା ଦେଖାଇ ସେ ଉପରୋକ୍ତ କଥାଟି ତାଙ୍କୁ ପଚାରିଲେ ।

କନ୍‌ଷ୍ଟାନ୍‌ସଙ୍କର ତାଙ୍କ ସ୍ୱାମୀଙ୍କ ପ୍ରତି ଅବିଶ୍ୱାସ ଜାତହୋଇଥିଲା । ତେଣୁ ତାଙ୍କୁ ଆଉ କୌଣସି ବିଷୟ ନ କହିବା ପାଇଁ କଥାଟାକୁ ବୁଲେଇ କହିଲେ, "ପ୍ରକୃତରେ ତୁମ ପକ୍ଷରେ ଜାଣିବାର କିଛି ନାହିଁ । ଏହା କେତେକ କିଣାକିଣି ବିଷୟ – ବିଶେଷତଃ ଏହା ସ୍ତ୍ରୀମାନଙ୍କର କାମ – ଅବଶ୍ୟ ଏହି କିଣାବିକାରେ ଯଥେଷ୍ଟ କିଛି ଲାଭହେବ ।"

ତାଙ୍କ ସ୍ତ୍ରୀ ଯାତ୍ରାର ଉଦ୍ଦେଶ୍ୟ ନକହି କଥାଟାକୁ ବୁଲେଇବା ପାଇଁ ଚେଷ୍ଟାକରୁଛନ୍ତି ଦେଖି ଉକ୍ତ ଗୁପ୍ତକଥାଟି ନିଶ୍ଚୟ ଏକ ଗୁରୁତର ବିଷୟ ବୋଲି ବୋନାସିଏକ୍ସ ଜାଣିଲେ । ତେଣୁ ସେ ରୋଚଫୋର୍ଟଙ୍କ ପାଖକୁ ଯାଇ ରାଣୀ ଯେ ଲଣ୍ଡନକୁ ପଠାଇବା ପାଇଁ ଜଣେ ବାର୍ତ୍ତାବାହକ ଦରକାର କରୁଛନ୍ତି, ତାହା ଜଣାଇଦେବା ପାଇଁ ସ୍ଥିର କଲେ । ସେ ସ୍ତ୍ରୀଙ୍କୁ କହିଲେ, "ଜଣେ ବନ୍ଧୁଙ୍କ ପାଖରେ ମୋର କିଛି ଜରୁରୀ କାମ ଅଛି । ମୁଁ ଖୁବ୍ ଶୀଘ୍ର ଫେରିଆସିବି – ତୁମେ ଥାଅ ।" ଏହା କହି ବାହାରକୁ ଚାଲିଗଲେ ।

ବୋନାସିଏକ୍ସ ଯିବା ପରେ ପରେ ଦରଜା ବନ୍ଦ ହୋଇଛି କି ନାହିଁ, ଛାତଉପରୁ କ'ଣ ଆବାଜ ଶୁଣି ମାଡାମ୍ ବୋନାସିଏକ୍ସ ଉପରକୁ ଚାହିଁଲେ । ଛାତ ଉପରୁ ତାଙ୍କୁ ଶୁଣାଗଲା, "ମାଡାମ୍ ବୋନାସିଏକ୍ସ, ମୁଁ ଦାର୍‌ତାୟାଁ । ପାଖ ଦରଜାଟା ଖୋଲିଦିଅନ୍ତୁ । ମୁଁ ଆପଣଙ୍କ ପାଖରେ ପହଞ୍ଚିଯିବି ।" ପାଖ ଦରଜାବାଟେ ଭିତରକୁ ଆସୁ ଆସୁ ଦାର୍‌ତାୟାଁ କହିଲା, "ମୋତେ ଜଣାଯାଉଛି ଆପଣଙ୍କ ସ୍ୱାମୀ ଅତ୍ୟନ୍ତ ଭୀରୁ ।" ମାଡାମ୍ ବୋନାସିଏକ୍ସ ବ୍ୟସ୍ତ ଥିଲା ପରି କହିଲେ, "ଆମ କଥାବାର୍ତ୍ତା ଆପଣ ସବୁ ଶୁଣିନେଲେ କି ?

"ହଁ-ହଁ, ପ୍ରତ୍ୟେକଟି ପଦ ।"

"କ'ଣ ବୁଝିଲେ ?"

"ହଜାରଟା କଥା । ପ୍ରଥମ କଥା ହେଲା, ଆପଣଙ୍କ ସ୍ୱାମୀ ନିପଟ ଓଲୁ । ଦ୍ୱିତୀୟ କଥା – ଆପଣ ବଡ଼ ଅଡୁଆରେ ପଡ଼ିଛନ୍ତି । ସର୍ବଶେଷରେ ଜଣେ ସାହସୀ, ବୁଦ୍ଧିମାନ୍ ଓ ରାଣୀଙ୍କ ପ୍ରତି ଅନୁରକ୍ତ ବ୍ୟକ୍ତି ଲଣ୍ଡନ ଯିବା ଦରକାର । ମନେହୁଏ, ମୋର ଏ ଗୁଣ ଦୁଇଟି ମୋର ଅଛି । ମୁଁ ଏ କାର୍ଯ୍ୟ କରିବାକୁ ପ୍ରସ୍ତୁତ ।"

ମାଡାମ୍ ବୋନାସିଏକ୍ସ ମୁହୂର୍ତ୍ତକ ପାଇଁ କିଛି କହିପାରିନଥିଲେ। ତାଙ୍କ ହୃଦୟ ଆଶା ଓ ଆଶ୍ୱାସନାରେ କମ୍ପିବାକୁ ଲାଗିଲା। ଦାର୍‌ତାୟାଁ ପୁଣି କହିଲା– "ମୋ ତରଫରୁ ଉତ୍ତର ଦେବାକୁ ଆପଣ ବୋଧହୁଏ ଅନ୍ୟ ଜଣେ ବ୍ୟକ୍ତି ଚାହିଁପାରନ୍ତି। ଆପଣ ଆଥସ୍, ପୋର୍ଥସ୍ ଓ ଆରାମିସ୍‌ଙ୍କୁ ଜାଣନ୍ତି କି ?"

"ନା, ତ! ଏ ଭଦ୍ରବ୍ୟକ୍ତିଗଣ କିଏ ?"

"ଏମାନେ ରାଜାଙ୍କର ତିନିଜଣ ମସ୍‌କେଟିଅର୍। ଆପଣ ସେମାନଙ୍କର କ୍ୟାପ୍‌ଟେନ୍ ଏମ୍. ଡି. ଟ୍ରିଭିଲ୍‌ଙ୍କୁ ଚିହ୍ନନ୍ତି କି ?"

"ବ୍ୟକ୍ତିଗତ ଭାବରେ ନୁହେଁ। ତେବେ ରାଣୀ ଥରେ ଦୁଇ ଥର ଏ ଭଦ୍ରବ୍ୟକ୍ତି ଜଣେ ସାହସୀ ଓ ବିଶ୍ୱସ୍ତ ଲୋକ ବୋଲି କହିବାର ଶୁଣିଛି।"

"ତେଣୁ ତାଙ୍କୁ ଆପଣଙ୍କ ଗୁପ୍ତ କଥାଟି କହିପାରନ୍ତି ଏବଂ ମୋତେ କୌଣସି କାର୍ଯ୍ୟରେ ପଠାଇବାପାଇଁ ବିଶ୍ୱାସ କରାଯାଇପାରେ କି ନା, ତାଙ୍କୁ ପଚାରନ୍ତୁ।"

"କିନ୍ତୁ ଗୁପ୍ତ ବିଷୟଟି ମୋର ନୁହେଁ; ଆଉ ଏପରିଭାବରେ ତ ତାହା ମୁଁ ବ୍ୟକ୍ତ କରିପାରିବିନାହିଁ।"

ଦାର୍‌ତାୟାଁ ଟିକିଏ ହତାଶବ୍ୟଞ୍ଜକ ଗଳାରେ କହିଲା, "ଆପଣଙ୍କ ସ୍ୱାମୀଙ୍କୁ ତ ଏହି କାର୍ଯ୍ୟଟି କରିବା ପାଇଁ କହୁଥିଲେ– ମୋତେ କାହିଁକି ପରୀକ୍ଷା କରୁନାହାନ୍ତି ? ଆଉ ତ ସମୟ ନଷ୍ଟ କରାଯାଇପାରିବନାହିଁ।"

ମାଡାମ୍ ବୋନାସିଏକ୍ସ ନିଷ୍ପତ୍ତିରେ ପହଞ୍ଚିବାକୁ ତଥାପି କଷ୍ଟ ଅନୁଭବ କରୁଥା'ନ୍ତି। ରାଣୀଙ୍କର ମାନସମ୍ମାନ ଏଥିରେ ଜଡ଼ିତ। ତେବେ ଦାର୍‌ତାୟାଁର ବୀରତ୍ୱ ଓ ସାହସିକତା ବିଷୟରେ ସେ ଯଥେଷ୍ଟ ପରିଚୟ ପାଇପାରିଛନ୍ତି। ସେ କହିଲେ, "ଶୁଣନ୍ତୁ, ଆପଣ ମୋ ପ୍ରତି ବା ରାଣୀଙ୍କ ପ୍ରତି ବିଶ୍ୱାସଘାତକତା କରିବେ ନାହିଁ ବୋଲି ଶପଥ ନେଇପାରିବେ କି ?" ଦାର୍‌ତାୟାଁ କହିଲା, "ମୁଁ ଆପଣଙ୍କ ନିକଟରେ ତଥା ଈଶ୍ୱରଙ୍କ ନିକଟରେ ଶପଥ କରୁଛି। ମୁଁ ପ୍ରତିଜ୍ଞାବଦ୍ଧ ଯେ, ମୁଁ ବର୍ତ୍ତମାନ ଯେଉଁ ଗୁରୁତର କାର୍ଯ୍ୟଟିର ଭାର ନେଉଛି, ତାହା ପ୍ରାଣ ବିନିମୟରେ ସାଧନ କରିବି।"

ମାଡାମ୍ ବୋନାସିଏକ୍ସ ଏହାପରେ ସେହି ଭୟଙ୍କର ଗୁପ୍ତ କଥାଟି ଦାର୍‌ତାୟାଁ ଆଗରେ ବ୍ୟକ୍ତ କଲେ। ଏହାର କିଛି ଅଂଶ ସେ ମଧ୍ୟରାତ୍ରିରେ ପୋଲ ଉପରେ ତା'ର ଅଜାଣତରେ ଜାଣିସାରିଥିଲା। ଦାର୍‌ତାୟାଁ କହିଲା– "ବର୍ତ୍ତମାନ ଆଉ ସମୟ ନଷ୍ଟ କରିବାକୁ ହେବ ନାହିଁ। ମୁଁ ବର୍ତ୍ତମାନ

ଯାଏଁ ମୋର ରେଜିମେଣ୍ଟ୍‌ରୁ ପନ୍ଦର ଦିନ ଛୁଟି ମଞ୍ଜୁର କରି ଆଣେ।''

କନ୍‌ଷ୍ଟାନ୍‌ସ ଟିକିଏ ହସି ତାର ଡେଣା ଉପରେ ନିଜର ହାତ ରଖି କହିଲେ, ''ଆପଣ ଗୋଟିଏ କଥା ବୋଧହୁଏ ଭୁଲିଯାଇଛନ୍ତି।'' ଦାର୍‌ତାୟାଁ ଦ୍ୱାର ପାଖକୁ ଅଧା ଚାଲିଯାଇ କହିଲା, ''ସେ କଥାଟି କ'ଣ ?'' ''ଆପଣଙ୍କର ଏହି ଯାତ୍ରା ପାଇଁ ଅର୍ଥର ଆବଶ୍ୟକ ରହିଛି ତ ?'' ସେ ଟିକିଏ ହସି କହିଲା, ''ଆପଣ ଠିକ୍ ମନେପକାଇଦେଇଛନ୍ତି।'' କନ୍‌ଷ୍ଟାନ୍‌ସ ତାଙ୍କ ପ୍ରଭୁ କାର୍ଡିନାଲ୍‌ଙ୍କଠାରୁ ଆଣିଥିବା ଟଙ୍କାଥଳିଟି ତାକୁ ବଢ଼ାଇଦେଇ କହିଲେ, ''ଏହାକୁ ନିଅନ୍ତୁ।'' ଦାର୍‌ତାୟାଁ ଟିକିଏ ଜୋର୍‌ରେ ହସିଉଠି କହିଲା, ''ତାହାହେଲେ କାର୍ଡିନାଲ୍‌ଙ୍କ ଅର୍ଥରେ ଆମକୁ ରାଣୀଙ୍କୁ ରକ୍ଷାକରିବାକୁ ହେବ।''

କନ୍‌ଷ୍ଟାନ୍‌ସ ଅଶ୍ରୁପୂର୍ଣ୍ଣ ନୟନରେ ଦାର୍‌ତାୟାଁର ଯିବା ରାସ୍ତାକୁ କିଛି ସମୟ ଚାହିଁରହିଲେ। ସେ ତାଙ୍କ ମନ ମଧ୍ୟରେ ପ୍ରାର୍ଥନା କଲେ, 'ହେ ଭଗବାନ୍, ରାଣୀଙ୍କୁ ରକ୍ଷାକର, ତାଙ୍କୁ ରକ୍ଷାକର, ମୋତେ ରକ୍ଷାକର।'

## ଅପ୍ରତ୍ୟାଶିତ ଛୁଟି ଲାଭ

ଦାର୍‌ତାୟାଁ ଏପର୍ଯ୍ୟନ୍ତ ଜଣେ ମସ୍‌କେଟିଅର୍ ହୋଇପାରିନଥିଲେ ମଧ୍ୟ ଏମ୍. ଡି. ଟ୍ରେଭିଲ୍ କିନ୍ତୁ ତାକୁ ସେହିପରି ଭାବରେ ବ୍ୟବହାର କରୁଥିଲେ। ଦାର୍‌ତାୟାଁ ଜାଣିଥିଲା ଯେ, କ୍ୟାପ୍‌ଟେନ୍ ଟ୍ରେଭିଲ୍ ରାଜା ଓ ରାଣୀଙ୍କ ପ୍ରତି ବିଶେଷ ଅନୁରକ୍ତ; କିନ୍ତୁ କାର୍ଡିନାଲ୍‌ଙ୍କୁ ଘୃଣା କରନ୍ତି। ତେଣୁ ଏ କାର୍ଯ୍ୟରେ ତାଙ୍କର ସାହାଯ୍ୟ ଓ ପରାମର୍ଶ ପାଇଁ ତାଙ୍କ ପାଖରେ ଯାଇ ପହଞ୍ଚିଲା। ସେ ଟ୍ରେଭିଲ୍‌ଙ୍କୁ ସବୁକଥା କହିବାପରେ ଅନୁନୟ କରି କହିଲା, ''ଆପଣଙ୍କ ବିନା ସାହାଯ୍ୟରେ ମୁଁ କିଛି କରିପାରିବି ନାହିଁ।''

''ମୁଁ ତୁମ ପାଇଁ କ'ଣ କରିପାରେ ?''

''ଆପଣ ମୋ ପାଇଁ ମିଷ୍ଟର୍ ଏସାର୍ଟ୍‌ସ୍‌ଙ୍କୁ କହି ପନ୍ଦର ଦିନର ଛୁଟି ମଞ୍ଜୁର କରାଇଦିଅନ୍ତୁ। ମୁଁ ଆଜି ରାତିରେ ଲଣ୍ଡନ ଯାତ୍ରା କରିବା ପାଇଁ ଇଚ୍ଛା କରିଛି।''

''ତୁମେ କ'ଣ ଏକା ଏକା ଯିବ ?''

''ହଁ ଆଜ୍ଞା !''

''ସେପରି ହେଲେ ତୁମେ ବେଶୀ ଦୂର ଯାଇପାରିବ ନାହିଁ; କାରଣ

କାର୍ଡିନାଲ୍‌ଙ୍କ ଲୋକେ ତୁମକୁ ଗିରଫ କରିପାରନ୍ତି ବା କୌଣସି ଅସ୍ୱାଭାବିକ ପରିସ୍ଥିତିରେ ଛଦ୍‌ବନ୍ଦ କରି ରଖିଦେଇପାରନ୍ତି।''

''ମୁଁ ଅନ୍ତତଃ ମୋର କର୍ତ୍ତବ୍ୟ ସମ୍ପାଦନ କରିବା ସମୟରେ ମୃତ୍ୟୁବରଣ କରିବି।''

''ତା' ହୋଇପାରେ; କିନ୍ତୁ ତୁମ କର୍ତ୍ତବ୍ୟ ତ ସମ୍ପାଦିତ ହେବ ନାହିଁ। ମୋ କଥା ଶୁଣ, ଏଭଳି କାର୍ଯ୍ୟରେ ତୁମେ ଚାରିଜଣଯାକ ଯାତ୍ରା କର। ତାହାହେଲେ ଜଣେ କିଏ ନିଶ୍ଚୟ ପହଞ୍ଚିପାରିବ। ତୁମର ତିନିବନ୍ଧୁ କିନ୍ତୁ ତୁମକୁ ଏହି କାର୍ଯ୍ୟରେ ସାହାଯ୍ୟ କରିବେ ତ ?''

''ନିଶ୍ଚିତଭାବରେ ଆଜ୍ଞା ! ରାଜାଙ୍କର ଯେକୌଣସି କାର୍ଯ୍ୟ ବିଶ୍ୱସ୍ତଭାବରେ ସମ୍ପାଦନ କରିବା ପାଇଁ ଆମେ ଚାରିଜଣ ଶପଥ କରିସାରିଛୁ।''

''ଉତ୍ତମ, ମୁଁ ପ୍ରତ୍ୟେକଙ୍କ ପାଇଁ ପନ୍ଦର ଦିନ ଲେଖାଏଁ ଛୁଟି ମଞ୍ଜୁର କରିଦେଉଛି। ବର୍ତ୍ତମାନ କାର୍ଡିନାଲ୍‌ଙ୍କ ଗୁପ୍ତଚରମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ମୋତେ ଉପଯୁକ୍ତ କାରଣ ଦେବାକୁ ହେବ। ଆର୍ଥସ୍‌ଙ୍କ ବିଷୟରେ ମୁଁ କହିବି ଯେ, କ୍ଷତଯୋଗୁଁ ସେ ବିଶେଷ କଷ୍ଟ ପାଉଥିବାରୁ ମଫସଲ ଅଞ୍ଚଳକୁ ବିଶ୍ରାମ ପାଇଁ ଯିବାକୁ ତାଙ୍କୁ ଅନୁମତି ଦିଆଯିବ। ଆଉ ପୋର୍ଥସ୍ ଓ ଆରାମିସ୍– ତାଙ୍କ ବନ୍ଧୁଙ୍କ ସ୍ୱାସ୍ଥ୍ୟ ବିଷୟରେ ସେମାନେ ବିଶେଷ ଉଦ୍‌ବିଗ୍ନ; ତେଣୁ ସେମାନେ ତାଙ୍କ ସହିତ ଯିବେ। କଥା ହେଲା, ମୁଁ ତାଙ୍କୁ ଛୁଟି ମଞ୍ଜୁର କରିବାଟାହିଁ ଯଥେଷ୍ଟ ପ୍ରମାଣ ଦେଉଛି ଯେ, ତୁମ ସହିତ ଯିବାପାଇଁ ମୁଁ ସେମାନଙ୍କୁ ଅନୁମତି ଦେଇଛି।''

''ଆପଣଙ୍କୁ ବହୁ ଧନ୍ୟବାଦ ! ମୋର ମଞ୍ଜୁରିପତ୍ର ଦୟାକରି ଆଥସ୍‌ଙ୍କ ପାଖକୁ ପଠାଇଦେବେ। କାରଣ ଆଜି ରାତିରେ ମୋ ନିଜ ବସାକୁ ଫେରିବାଟା ବୋଧହୁଏ ବୁଦ୍ଧିମାନ୍‌ର କାର୍ଯ୍ୟ ହେବ ନାହିଁ।''

ଦାର୍‌ତାଁୟା ଯିବାକୁ ପ୍ରସ୍ତୁତ ହେବାରୁ ଏମ୍. ଡି. ଟ୍ରିଭିଲ୍ ପଚାରିଲେ, ''ଆଚ୍ଛା, ଏଥିପାଇଁ ଅର୍ଥ ?'' ପକେଟରେ ଥିବା ଟଙ୍କାଥଳିରେ ହାତ ମାରି ଦାର୍‌ତାଁୟା କହିଲା– ''ଏଥିରେ ୩୦୦ ପିସ୍ତୋଲ ଅଛି।''

''ଉତ୍ତମ ! ସେହି ଅର୍ଥରେ ତୁମେ ପୃଥିବୀର ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ଯାଇପାରିବ। ଆଚ୍ଛା, ବର୍ତ୍ତମାନ ବାହାରିପଡ଼। ମୁଁ ତୁମର ଶୁଭକାମନା କରୁଛି।'' ଏମ୍. ଡି. ଟ୍ରିଭିଲ୍ ଆଗକୁ ଦୁଇପାଦ ଅଗ୍ରସର ହୋଇ ତା' ସହିତ କରମର୍ଦ୍ଦନ କଲେ।

ଦାର୍‌ତାଁୟା ସେଠାରୁ ଯାଇ ପ୍ରଥମେ ଆରାମିସ୍‌ଙ୍କ ଗୃହରେ ଉପସ୍ଥିତ

ହେଲା । ଦୁଇବନ୍ଧୁ କଥାବାର୍ତ୍ତା ହେଉଛନ୍ତି, ଏହି ସମୟରେ ଜଣେ ପତ୍ରବାହକ ଗୋଟିଏ ମୁଦାଲଫାଫା ଧରି ପହଞ୍ଚିଲା । ଆରାମିସ୍ ପଚାରିଲେ, ''ଲଫାଫା ଭିତରେ କ'ଣ ଅଛି?'' ପତ୍ରବାହକ ଉତ୍ତର ଦେଲା, ''ଆପଣଙ୍କ ପାଇଁ ଛୁଟି ମଞ୍ଜୁର ହୋଇଛି ।''

''ମୋର ! ମୁଁ–''

ଦାର୍‌ତାୟାଁ ଉପରେ ପଡ଼ି କହିଲା, ''ପ୍ରଶ୍ନ ପଚାରନ୍ତୁ ନାହିଁ । ଗ୍ରହଣ କରନ୍ତୁ ।''

ପତ୍ରାବାହକ ଚାଲିଯିବାପରେ ଆରାମିସ୍ ପଚାରିଲେ, ''ଏହାର ଅର୍ଥ କ'ଣ ?''

''ଏହାର ଅର୍ଥ ହେଲା, ଆପଣ ଲୁଗାପଟା ବାନ୍ଧି ପନ୍ଦର ଦିନ ପାଇଁ ମୋ ସହିତ ଯାତ୍ରାକରିବେ ।'' ଦାର୍‌ତାୟାଁ ଟିକିଏ ହସି କହିଲା, ''ବର୍ତ୍ତମାନ ଆଥସ୍‌ଙ୍କ ସହ ସାକ୍ଷାତ୍ କରିବାକୁ ଯିବା ।''

''ବୋଧହୁଏ ବର୍ତ୍ତମାନ ଆପଣଙ୍କ ଭୃତ୍ୟ ଆପଣଙ୍କ ଜିନିଷପତ୍ର ଧରି ଆଥସ୍‌ଙ୍କ ବସାକୁ ଆସିବ ।''

ଦୁଇବନ୍ଧୁ ସେଠାରେ ପହଞ୍ଚି ଦେଖିଲେ ଯେ, ଆଥସ୍ ଗୋଟିଏ ହାତରେ ଛୁଟିମଞ୍ଜୁରିପତ୍ର ଓ ଅନ୍ୟ ହାତରେ ଏମ୍. ଡି. ଟ୍ରିଭିଲ୍ ପଠାଇଥିବା ଖଣ୍ଡେ ଚିଠି ଧରି ଠିଆହୋଇଛନ୍ତି । ସେ ବନ୍ଧୁଦ୍ୱୟଙ୍କୁ ଦେଖି କହିଲେ, ''ଏହା କ'ଣ ମୋତେ ବୁଝାଇପାରିବ କି ? ଦେଖ, ଏଥିରେ କ'ଣ ଲେଖାଯାଇଛି ।'' ତା'ପରେ ସେ ପତ୍ରଟି ପାଠକଲେ :

'ପ୍ରିୟ ଆଥସ୍,

ତୁମର କ୍ଷତଯୋଗେ ତୁମେ କଷ୍ଟଭୋଗ କରୁଛ । ତୁମର ବିଶ୍ରାମ ନିତାନ୍ତ ଦରକାର । ତେଣୁ ପନ୍ଦର ଦିନ ଛୁଟି ମଞ୍ଜୁର କଲି । ତୁମେ ଫୋର୍ଜେସକୁ ଯାଇପାର କିମ୍ବା ସୁବିଧାମୁତାବକ ଅନ୍ୟ ଯେକୌଣସି ସ୍ଥାନକୁ ଯାଇପାର । ଯଥାଶୀଘ୍ର ଆରୋଗ୍ୟ ଲାଭ କରି ଫେରିଆସ ।

ତୁମର ସ୍ନେହର ଟ୍ରିଭିଲ୍ ।'

ଦାର୍‌ତାୟାଁ କହିଲା, ''ଏହାର ସରଳ ଅର୍ଥ ହେଉଛି, ଆପଣ ମୋ ସହିତ ଆସନ୍ତୁ ।''

''କ'ଣ ଫୋର୍ଜେସକୁ ?''

''ସେଠାକୁ ବା ଅନ୍ୟ ଯେକୌଣସି ସ୍ଥାନକୁ– ପତ୍ରରେ ତ ଲେଖାଅଛି ।''

''ଓଃ, ବୁଝିଲି । ରାଜାଙ୍କ କାର୍ଯ୍ୟରେ ।''

"ରାଜାଙ୍କର ବା ରାଣୀଙ୍କର ହେଉ– ଆମେ କ'ଣ ସେମାନଙ୍କ ଭୃତ୍ୟ ନୁହଁ କି ?"

ଠିକ୍ ସେହି ସମୟରେ ପୋର୍ଥସ୍ ଆସି ସେଠାରେ ପହଞ୍ଚିଲେ। କହିଲେ, "ହେ ଭଗବାନ, ମୋତେ ଆଶ୍ଚର୍ଯ୍ୟ ଲାଗୁଛି ଯେ, ମସ୍କେଟିଅର୍ ନ ଚାହିଁଲେ ମଧ ତାଙ୍କୁ କିପରି ଛୁଟି ମିଳିଥାଏ ?" ଦାର୍ତାୟାଁ କହିଲା, "ସେମାନଙ୍କ ପାଇଁ ଛୁଟି ମଞ୍ଜୁର କରିବାକୁ ବନ୍ଧୁ ଅଛନ୍ତି।" ପୋର୍ଥସ୍ କହିଲେ, "ଆଃ, ମୋତେ ଜଣାଯାଉଛି କିଛି ନା କିଛି ନୂଆ କଥା ଘଟିବାକୁ ଯାଉଛି।" ବର୍ତ୍ତମାନ ସବୁକଥା ବୁଝାଇ କହିଦେବାଟା ଉଚିତ ହେବ ମନେକରି ଦାର୍ତାୟାଁ କହିଲା, "ବନ୍ଧୁଗଣ, ଆମ ସମସ୍ତଙ୍କୁ ବର୍ତ୍ତମାନ ଲଣ୍ଡନ ଯିବାକୁ ହେବ।" ପୋର୍ଥସ୍ କହିଲେ, "ବେଶ୍ ତ ! ଲଣ୍ଡନ ଯିବାପାଇଁ ଆମର ଅର୍ଥ ଦରକାର– ତାହା କାହିଁ ?"

ଦାର୍ତାୟାଁ ଟଙ୍କାପୂର୍ଣ୍ଣ ଥଳିଟି ଦେଖାଇ କହିଲା, "ଚିନ୍ତା ନାହିଁ, ମୋ ପାଖରେ ଯଥେଷ୍ଟ ଅଛି। ଏଥିରେ ୩୦୦ ପିସ୍ତୋଲ ଅଛି। ଆମେ ପ୍ରତ୍ୟେକେ ୭୫ଟି କରି ମୁଦ୍ରା ନେବା। ସେତିକିରେ ଆମେ ପ୍ରତ୍ୟେକେ ଲଣ୍ଡନ ଯାଇ ଫେରିଆସିପାରିବା। ହୁଏତ ଆମ ସମସ୍ତଙ୍କୁ ଲଣ୍ଡନ ଯିବାକୁ ପଡ଼ିନପାରେ।"

"କାହିଁକି ?"

ଦାର୍ତାୟାଁ କହିଲା, "କାରଣ ଆମ ମଧ୍ୟରୁ ଅଧିକାଂଶଙ୍କୁ ଲଣ୍ଡନ ଯିବା ରାସ୍ତାରେ ରହିଯିବାକୁ ପଡ଼ିପାରେ। ଶୁଣନ୍ତୁ, ଜଉମୁଦ ହୋଇଥିବା ଖଣ୍ଡିଏ ପତ୍ର ମୋ ପାଖରେ ଅଛି। ତାହାହିଁ ସର୍ବସ୍ୱ। ତାହା ମୋର ଏହି ଭିତର ପକେଟ୍‌ରେ ଅଛି। ଏହି ପତ୍ର ଉପରେ ବକିଙ୍ଗହାମ୍ ଡ୍ୟୁକ୍‌ଙ୍କ ଠିକଣା ଲେଖାଯାଇଛି। ଯଦି ଦୈବାତ୍ ମୁଁ ମରିଯାଏ ବା ଆହତ ହୁଏ, ଆପଣମାନଙ୍କ ମଧ୍ୟରୁ ଜଣେ କେହି ଏହାକୁ ନେଇ ଲଣ୍ଡନ ଚାଲିଯିବେ। ଯଦି କୌଣସି କାରଣରୁ ଉକ୍ତ ପତ୍ରବାହକ ଯାଇ ନ ପାରନ୍ତି, ତାହାହେଲେ ଅନ୍ୟ ଜଣେ କିଏ ଏହା କରିବେ। ଏହିପରି ଚାଲିବ। ତେବେ ପତ୍ରଖଣ୍ଡି ଯେମିତି ହେଲେ ଡ୍ୟୁକ୍‌ଙ୍କ ହସ୍ତଗତ ହେବା ନିତାନ୍ତ ଜରୁରି। ମୁଁ ବର୍ତ୍ତମାନ ସବୁକଥା ଆପଣମାନଙ୍କୁ ବୁଝାଇ କହିଦେଲି।"

ମସ୍କେଟିଅର୍ ତ୍ରୟୀ କୌଣସି ଦ୍ୱିଧା ନ କରି କହିଲେ, "ଆମେ ସମସ୍ତେ ରାଜି।" ତାହା ପରେ ଯାତ୍ରାପାଇଁ ସମସ୍ତେ ପ୍ରସ୍ତୁତ ହେଲେ।

# ଦୁଃସାହସିକ ଯାତ୍ରା

ରାତି ଦୁଇଟାରେ ଚାରିବନ୍ଧୁ ସେମାନଙ୍କ ଭୃତ୍ୟମାନଙ୍କ ସହିତ ଲଣ୍ଡନ ଉଦ୍ଦେଶ୍ୟରେ ପ୍ୟାରିସ୍ ଛାଡ଼ିଲେ। ଚାଣ୍ଟିଲ୍ଲୀଠାରେ ପହଞ୍ଚିଲା ପର୍ଯ୍ୟନ୍ତ ସବୁକଥା ଭଲରେ ଘଟିଗଲା। ପ୍ରଥମ ପାନ୍ଥଶାଳାଠାରେ ସେମାନେ ଅଶ୍ୱରୁ ଅବତରଣ କରି ପ୍ରାତଃଭୋଜନ ପାଇଁ ଗଲେ। ସେମାନଙ୍କ ଭୃତ୍ୟମାନେ କିନ୍ତୁ ଘୋଡ଼ାମାନଙ୍କୁ ଘୋଡ଼ାଶାଳରେ ବିଶ୍ରାମ ପାଇଁ ନ ବାନ୍ଧି ସେମିତି ଧରି ଛିଡ଼ାହୋଇଥାନ୍ତି; କାରଣ ସେମାନଙ୍କୁ ଯଥାଶୀଘ୍ର ଯାତ୍ରା କରିବାକୁ ହେବ।

ଗୋଟିଏ ଲମ୍ବ ଟେବୁଲ ନିକଟରେ ବସି ଚାରିବନ୍ଧୁ କିଛି ଖାଦ୍ୟ ଓ ଦୁଇବୋତଲ ପାନୀୟ ବରାଦ କଲେ। ଟେବୁଲ ନିକଟରେ ଅଳ୍ପ ସମୟ ପୂର୍ବେ ପହଞ୍ଚିଥିବା ଏକ ବ୍ୟକ୍ତି ମଧ୍ୟ ତାଙ୍କର ପ୍ରାତଃଭୋଜନରେ ବ୍ୟସ୍ତ ଥିଲେ। ଉକ୍ତ ଭଦ୍ରବ୍ୟକ୍ତିଜଣକ ପ୍ରଥମେ ପାଗ ବିଷୟରେ କହିଲେ ଓ ଚାରିବନ୍ଧୁ ବେଶ୍ ଭଦ୍ରତାର ସହିତ ଉତ୍ତର ପ୍ରଦାନ କଲେ। ସେମାନେ ଖାଇସାରି ଠିକ୍ ଉଠିବା ସମୟକୁ ଉକ୍ତ ଭଦ୍ରବ୍ୟକ୍ତି ତାଙ୍କ ନିଜ ଗ୍ଲାସ ଉଠାଇ କାର୍ଡିନାଲ୍‌ଙ୍କ ସ୍ୱାସ୍ଥ୍ୟ କାମନା କରିବାପାଇଁ ପୋର୍ଥସ୍‌ଙ୍କୁ ଅନୁରୋଧ କଲେ। ପୋର୍ଥସ୍ ସେ କଥାରେ ସମ୍ମତ ହୋଇ ତାହା ସହ ରାଜାଙ୍କର ମଧ୍ୟ ଉତ୍ତମ ସ୍ୱାସ୍ଥ୍ୟ କାମନା କରିବାକୁ କହିଲେ। ଭଦ୍ରବ୍ୟକ୍ତିଜଣକ ଏଥିରେ ଖୁବ୍ ରାଗିଯାଇ ଚିତ୍କାର କଲେ ଯେ, କାର୍ଡିନାଲ୍‌ଙ୍କ ବ୍ୟତୀତ ସେ ଅନ୍ୟ କୌଣସି ରାଜାଙ୍କୁ ଜାଣନ୍ତି ନାହିଁ। ପୋର୍ଥସ୍ ତାଙ୍କୁ ମଦ୍ୟପ, ନିର୍ବୋଧ ବୋଲି କହି ଯିବାକୁ ଉଠିଲେ; କିନ୍ତୁ ସେ ବ୍ୟକ୍ତି ଆକ୍ରମଣ ପାଇଁ ତରବାରି କୋଷମୁକ୍ତ କଲେ। ଆରାମିସ୍ ପୋର୍ଥସ୍‌ଙ୍କୁ କହିଲେ, "ସମୟ ନଷ୍ଟ କର ନାହିଁ। ଲୋକଟାକୁ ପୂରା ମାରିଦେଇ ବା ଅକାମୀ କରିଦେଇ ଯଥାଶୀଘ୍ର ଆମ ସାଙ୍ଗରେ ମିଳିତହୁଅ।"

ତିନି ବନ୍ଧୁ ଘୋଡ଼ା ଝପଟାଇ ଯାଉ ଯାଉ ଆଥସ୍ କହିଲେ, "ଆମ ଭିତରୁ ଜଣେ ରହିଗଲେ।" ଆରାମିସ୍ ପଚାରିଲେ, "ହଁ, ତା ତ ଠିକ୍। ତେବେ ଆମମାନଙ୍କ ମଧ୍ୟରୁ ଆଉ କାହାକୁ ନ ବାଛି ସେ ଲୋକଟା ପୋର୍ଥସ୍‌ଙ୍କୁ ଧଇଲା ବା କାହିଁକି?" ଦାର୍‌ତାୟାଁ କହିଲା, "ସବୁଦିନ ଭଳି ପୋର୍ଥସ୍ ଟିକିଏ ବଡ଼ପାଟିରେ କଥାବାର୍ତ୍ତା କରୁଥିଲେ; ତେଣୁ ଆମ ସମସ୍ତଙ୍କ ମଧ୍ୟରେ ସେ ନେତା ବୋଲି ତାର ମନେହେଲା। ମୋର ଦୃଢ଼ବିଶ୍ୱାସ,

ସେ ଲୋକଟା ମଦ୍ୟପ ନୁହେଁ।''

ବିଭାଭୟସ୍ଠାରେ ସେମାନଙ୍କର ଘୋଡ଼ାମାନଙ୍କୁ ଟିକିଏ ବିଶ୍ରାମ ଦେବାପାଇଁ ସେମାନେ ରହିଲେ ଓ ପୋର୍ଥସ୍‌ଙ୍କ ପାଇଁ ମଧ କିଛି ସମୟ ଅପେକ୍ଷା କଲେ। ଦୁଇଘଣ୍ଟା ଅପେକ୍ଷା କଲା ପରେ ମଧ ପୋର୍ଥସ୍ ଫେରିଲେ ନାହିଁ; ତେଣୁ ସେମାନେ ସେମାନଙ୍କ ଗନ୍ତବ୍ୟପଥରେ ଚାଲିବାକୁ ଲାଗିଲେ। କିଛି ବାଟ ଅତିକ୍ରମ କରିବା ପରେ ସେମାନେ ଦେଖିଲେ କେତେକ ବ୍ୟକ୍ତି ରାସ୍ତା ଉପରେ ଥିବା ଖାଲଗୁଡ଼ିକ ମାଟି ପକାଇ ପୋତୁଛନ୍ତି। ଅଣଓସାରିଆ ରାସ୍ତାଟି ବୁଦବୁଦିକିଆ ଜଙ୍ଗଲ ଭିତରଦେଇ ଯାଇଛି। ଆରାମିସ୍ ସେମାନଙ୍କୁ ବାଟ ଛାଡ଼ିଦେବା ପାଇଁ ଉକ୍ତ ଲୋକମାନଙ୍କୁ ଚିତ୍କାର କରି କହିଲେ। ସେମାନେ ବାଟ ଛାଡ଼ିଦେବେ କ'ଣ, ବରଂ ପଥିକମାନଙ୍କୁ ଗାଳି କଲେ ଓ ସେମାନଙ୍କ ଉପରକୁ ମାଟି ଫିଙ୍ଗିଲେ। ଦାର୍ତାୟାଁ ତାର ତରବାରି ବାହାର କରିବାରୁ ସେହି ଲୋକମାନେ ବୁଦାପଛପଟକୁ ଚାଲିଯାଇ ସେମାନଙ୍କର ବନ୍ଧୁକ ନେଇ ଚାଲିଆସିଲେ ଏବଂ ଏହି ପଥିକମାନଙ୍କୁ ଲକ୍ଷ୍ୟ କରି ଗୁଳି କଲେ। ଆରାମିସ୍ ଓ ତାଙ୍କ ସହଚର ଗୁଳିମାଡ଼ରେ ଆହତ ହେଲେ। ଦାର୍ତାୟାଁ ଚିତ୍କାର କରିଉଠିଲା, ''ଏମାନେ ଗୁପ୍ତ ଶତ୍ରୁ। ସେମାନଙ୍କ ସହ ଯୁଦ୍ଧ କରିବା ପାଇଁ ନ ରହି ଆଗେଇ ଚାଲ।''

ସେମାନେ କ୍ରିଭିକୋରଠାରେ ପହଞ୍ଚିବା ସମୟକୁ ଆରାମିସ୍ ରକ୍ତପାତଯୋଗୁଁ ଖୁବ୍ ବେଶୀ ଦୁର୍ବଳ ହୋଇପଡ଼ିଥିଲେ। ଭୃତ୍ୟ ମୋସ୍କୁନର କ୍ଷତ ମଧ ବହୁତ କଷ୍ଟ ଦେଉଥିଲା। ରାସ୍ତା ଉପରର ଗୋଟିଏ ପାନ୍ଥଶାଳାରେ ଏହି ଦଳ କିଛି ସମୟ ବିଶ୍ରାମ କଲେ ଏବଂ ଆରାମିସ୍‌ଙ୍କୁ ତାଙ୍କ ଭୃତ୍ୟ ଜିମା ଛାଡ଼ି ଦାର୍ତାଁୟା ଓ ଆଥସ୍ ଅଗ୍ରସର ହେଲେ। ଅର୍ଦ୍ଧରାତ୍ରପୂର୍ବରୁ ସେମାନେ ଆମିନଠାରେ ନିରାପଦରେ ପହଞ୍ଚି ପାନ୍ଥଶାଳାକୁ ଗଲେ। ପାନ୍ଥଶାଳାର ମାଲିକ ଅତି ଭଦ୍ର ଜଣାଯାଉଥିଲେ ମଧ ଦାର୍ତାୟାଁ ନିଜକୁ ପ୍ରସ୍ତୁତ କରି ସାରିଥିଲା। ରାତ୍ରଭୋଜନ ପରେ ଆଥସ୍‌ଙ୍କ ଭୃତ୍ୟ ଗ୍ରିମଣ୍ଡ ଘୋଡ଼ାଶାଳରେ ଘୋଡ଼ାମାନଙ୍କର ଯତ୍ନ ନେବାପାଇଁ ଶୋଇବାକୁ ଗଲା। ଦାର୍ତାୟାଁ ଓ ଆଥସ୍ ଏକ କୋଠରିରେ ଶୋଇଲେ ଏବଂ ପ୍ଲାଞ୍ଚେଟ୍ ଠିକ୍ ଦରଜାକୁ ମାଡ଼ି ଶୋଇଲା।

ରାତି ଚାରିଟା ବେଳକୁ ଅଶ୍ୱଶାଳାରୁ ଗୋଳମାଳର ଶବ୍ଦ ଶୁଣାଗଲା। ଗ୍ରିମଣ୍ଡ ଉକ୍ତ ଅଶ୍ୱଶାଳାଲୋକଙ୍କୁ ଘୋଡ଼ାମାନଙ୍କ ଉପରେ ଲଦନ ପକାଇବାକୁ ସାହାଯ୍ୟ କରିବାକୁ ଡାକିବାରୁ ସେମାନେ ତାକୁ ବାଡ଼ିରେ ପିଟିବାକୁ ଆରମ୍ଭ

କଲେ। ପ୍ଲାଞ୍ଚେଟ୍ ଯାଇ ଦେଖିଲା ଯେ, ତାର ବନ୍ଧୁ ରକ୍ତାକ୍ତ ଅବସ୍ଥାରେ ଅଜ୍ଞାନ ହୋଇ ଭୂମି ଉପରେ ପଡ଼ିରହିଛି। ଘୋଡ଼ାଗୁଡ଼ିକ ସେମାନଙ୍କର ମୁଣ୍ଡ ଓ ଗୋଡ଼ରେ ଏତେ ଆଘାତ ପାଇଛନ୍ତି ଯେ, ସେମାନଙ୍କ ପକ୍ଷରେ ଆଉ ଚାଲିବା ଏକପ୍ରକାର ଅସମ୍ଭବ। ବହୁତ କିଛି ଅସୁବିଧା ହେଲା। ଏସବୁ କେବଳ ଦୁର୍ଘଟଣା ନୁହେଁ, ଏହା ପୂର୍ବରୁ ପରିକଳ୍ପିତ। ଆଥସ୍ ଓ ଦାର୍ତାୟାଁ ନିକଟବର୍ତ୍ତୀ ଅଞ୍ଚଳରୁ ଘୋଡ଼ା ଭଡ଼ାରେ ଆଣିବାକୁ ଠିକ୍ କଲେ। ଫାଟକ ପାଖରେ ସେମାନେ ଦୁଇଟି ସୁସଜ୍ଜିତ ଘୋଡ଼ା ଦେଖିଲେ। ସେମାନଙ୍କ ଜିନ୍‌ରେ ପିସ୍ତଲ ମଧ୍ୟ ପ୍ରସ୍ତୁତ ଥିଲା। ସେମାନେ ଠିକ୍ ଏହିପରି ଅଶ୍ୱ ଚାହୁଁଥିଲେ। ତେଣୁ ଏ ଘୋଡ଼ା ଦୁଇଟିର ମାଲିକ କିଏ, ସେମାନେ ଖୋଜିବାକୁ ଲାଗିଲେ। ଜଣାଗଲା ସେମାନେ ସେ ପାନ୍ଥଶାଳାରେ ରାତ୍ରିଯାପନ ପରେ ଖାଇବା ଘରକୁ ଯାଇଛନ୍ତି। ଆଥସ୍ ପାନ୍ଥଶାଳା ମାଲିକଙ୍କୁ ପାଖ ଏକ କୋଠରିରେ ଦେଖି ତାଙ୍କୁ ଦୁଇଟି ପିସ୍ତୋଲ ମୁଦ୍ରା ଦେଲେ। ସେ ଦୁଇଟିଯାକ ମୁଦ୍ରା ନେଇ ହାତରେ ଏପଟ ସେପଟ କରି ଚିତ୍କାର କରିଉଠିଲେ ଯେ, ଉକ୍ତ ମୁଦ୍ରା ଦୁଇଟି ଜାଲ୍ ଓ ସେମାନଙ୍କୁ ଗିରଫ କରିବା ପାଇଁ ବ୍ୟବସ୍ଥା କରିବେ।

ଆଥସ୍ ଚିତ୍କାର କଲେ, ''ଆରେ ବଦ୍‌ମାସ, ମୁଁ ତୋ କାନ କାଟିଦେବି।'' ଠିକ୍ ସେତିକିବେଳକୁ ଖାଇବାଘରୁ ସେ ଦୁଇଜଣ ଲୋକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ସେହି ଗୃହକୁ ମାଡ଼ିଆସିଲେ। ଆଥସ୍ ଚିତ୍କାର କଲେ, ''ଦାର୍ତାୟାଁ, ମୁଁ ଏଠାରେ ରହିଗଲି; ତୁମେ ଘୋଡ଼ା ଦୁଇଟି ନେଇ ପଳେଇଯାଅ।''

ଦାର୍ତାୟାଁ ଓ ପ୍ଲାଞ୍ଚେଟ୍ ସଙ୍ଗେ ସଙ୍ଗେ ଘୋଡ଼ା ଦୁଇଟି ଉପରେ ଚଢ଼ି ସେଠାରୁ ଚାଲିଗଲେ। ଦାର୍ତାୟାଁ କିଛି ସମୟ ପରେ ପ୍ଲାଞ୍ଚେଟ୍‌କୁ ପଚାରିଲା, ''ଆଥସ୍‌ଙ୍କର କ'ଣ ହେଲା, ତୁମେ ଦେଖିଛ କି ?'' ପ୍ଲାଞ୍ଚେଟ୍ କହିଲା, ''ମୁଁ ଝରକା ଭିତରଦେଇ ଦେଖିଛି, ଆଥସ୍ ସେମାନଙ୍କ ମଧ୍ୟରୁ ଜଣକୁ ଗୁଳିକରିଦେଲେ ଓ ଅନ୍ୟ ଜଣକ ସହିତ ତରବାରି ଧରି ମୁକାବିଲା କରୁଥିଲେ; ମାତ୍ର ପାନ୍ଥଶାଳା ମାଲିକର କଣ ହେଲା ବା ସେ କୁଆଡ଼େ ଗଲା, ଜାଣିନାହିଁ ମୁଁ।''

# ଦ୍ୱିତୀୟ ବ୍ୟକ୍ତି ପ୍ରଥମେ ଯାତ୍ରାକଲେ

ଦାର୍‌ତାୟାଁ ଓ ପ୍ଲାଞ୍ଚେଟ୍ ଅତି ଦ୍ରୁତଗତିରେ ଯାଇ କାଲେ ବନ୍ଦରର ନିକଟବର୍ତ୍ତୀ ହେଲେ। ସହର ଫାଟକର କିଛି ଦୂରରୁ ତାଙ୍କ ଘୋଡ଼ାଟି ହାଲିଆ ହୋଇ ତଳେ ପଡ଼ିଗଲା। ପ୍ଲାଞ୍ଚେଟ୍‌ର ଘୋଡ଼ା ମଧ୍ୟ ଥରେ ରହିଲା ତ ରହିଲା— ତାକୁ ଆଉ ଆଗକୁ ପାଦେ ନେବା ସମ୍ଭବ ହେଲାନାହିଁ। ସୌଭାଗ୍ୟ ବଶତଃ ଆଉ ଅଧିକ ବାଟ ନଥିଲା। ଦୁହେଁଯାକ ସେଠାରେ ଘୋଡ଼ା ଦୁଇଟିକୁ ଛାଡ଼ିଦେଇ ଚାଲି ଚାଲି ବନ୍ଦର ନିକଟକୁ ଗଲେ। ସେମାନେ କିନ୍ତୁ ଏକା ଜାହାଜ ଧରିବା ପାଇଁ ଏତେ ବ୍ୟସ୍ତ ନ ଥିଲେ— ଆଉ ଜଣେ ବ୍ୟକ୍ତି ତାଙ୍କ ଭୃତ୍ୟ ସହିତ ଜାହାଜ ଧରିବାକୁ ଆଗେ ଆଗେ ଦୌଡ଼ିଥିଲେ। ସେତେବେଳକୁ ଜାହାଜ ଛାଡ଼ିବା ଉପରେ। ଦାର୍‌ତାୟାଁ ଜାହାଜ ନିକଟରେ ପହଞ୍ଚି ଶୁଣିଲା, ସେ ଲୋକ ଜଣକ ପଚାରୁଛନ୍ତି ଯେ, ଇଂଲଣ୍ଡକୁ ସଙ୍ଗେ ସଙ୍ଗେ ଯାଇହେବ କି ନାହିଁ।

କ୍ୟାପ୍‌ଟେନ୍ ଉତ୍ତର ଦେଲେ, ''ଏତେ ସହଜ ନୁହେଁ। କାର୍ଡିନାଲ୍‌ଙ୍କ ଦସ୍ତଖତ ଥିବା ଅନୁମତିପତ୍ର ନଥିଲେ ଏ ଜାହାଜରେ କାହାକୁ ନେବା ସମ୍ଭବ ନୁହେଁ। ଏହିପରି ଆଦେଶ ଆଜି ସକାଳେ ଏଠାରେ ପହଞ୍ଚିଛି।''

ସେହି ଭଦ୍ରବ୍ୟକ୍ତି ନିଜ ପକେଟରୁ ଖଣ୍ଡିଏ ଚଉଡା କାଗଜ ବାହାରକରି କହିଲେ, ''ମୋ ପାଖରେ ଅନୁମତିପତ୍ର ଅଛି।''

''ଆପଣ ବନ୍ଦରର ଗଭର୍ଣ୍ଣରଙ୍କୁ ତାହା ଦେଖାନ୍ତୁ ଓ ତାଙ୍କ ଦସ୍ତଖତ ଆଣନ୍ତୁ। ମୁଁ ଖୁସିରେ ଆପଣଙ୍କୁ ନେଇଯିବି।''

ସେ ଭଦ୍ରଲୋକ ଗଭର୍ଣ୍ଣରଙ୍କ ପାଖକୁ ଚାଲିଲେ। ଉକ୍ତ ବ୍ୟକ୍ତିର ଅନୁସରଣ କରିବା ପାଇଁ ପ୍ଲାଞ୍ଚେଟ୍‌କୁ ନିର୍ଦ୍ଦେଶ ଦେଇ ସେ ମଧ୍ୟ ଯେପରି ଗଭର୍ଣ୍ଣରଙ୍କ ପାଖକୁ ଅନୁମତିପତ୍ର ଦସ୍ତଖତ ପାଇଁ ଯାଉଛି, ଦାର୍‌ତାୟାଁ ସେହିପରି ଅଭିନୟ କରି ଚାଲିଲା। ଗଭର୍ଣ୍ଣର ଗୋଟିଏ କୂଦ ଉପରେ ଠିକ୍ ସମୁଦ୍ରକୂଳରେ ପୋତାଶ୍ରୟ ନିକଟରେ ବାସକରୁଥିଲେ। ଗଭର୍ଣ୍ଣରଙ୍କ ଗୃହ ପୂର୍ବରୁ ଏକ ଗଛଗହଳି ସ୍ଥାନ ଥିଲା। ଦାର୍‌ତାୟାଁ ଟିକିଏ ଦ୍ରୁତଗତିରେ ଆଗେଇ ଯାଇ ଉକ୍ତ ଭଦ୍ରବ୍ୟକ୍ତିଙ୍କୁ ଧରିପକାଇଲା ଓ କହିଲା, ''କ୍ଷମା କରନ୍ତୁ ଆଜ୍ଞା, ମୋର ମନେହୁଏ ଆପଣ ତରତର ହେଉଛନ୍ତି।''

ଭଦ୍ରବ୍ୟକ୍ତି ଉତ୍ତର ଦେଲେ, ''ମୋ ଭଳି ଏତେ ତରତର କିଏ

ହେବ ?''

ଦାର୍ତାୟାଁ କହିଲା, ''ମୁଁ ମଧ ବିଶେଷ ବ୍ୟଗ୍ର। ତେବେ ଆପଣ ମୋତେ ଟିକିଏ ସାହାଯ୍ୟ କରନ୍ତୁ।''

''କିପରି ସାହାଯ୍ୟ କରିପାରେ ?''

''ମୁଁ ପ୍ରଥମେ ଯାତ୍ରା କରିବି।''

''ମୁଁ ଦୁଃଖିତ ଆଜ୍ଞା, ମୁଁ ପ୍ରଥମେ ପହଞ୍ଚିଛି ଓ ପ୍ରଥମେ ଯିବି।''

ଦାର୍ତାୟାଁ ଉତ୍ତର ଦେଲା, ''ମୁଁ ମଧ ଦୁଃଖିତ; କିନ୍ତୁ ମୁଁ ପରେ ପହଞ୍ଚିଲେ ମଧ ମୋତେ ପ୍ରଥମେ ଯିବାକୁହିଁ ହେବ।''

''ଆପଣ ମୋ ସହିତ କଳି କଜ୍ଜାପରି ମନେହେଉଛି। ତେବେ ଆପଣଙ୍କ ଯାତ୍ରା ସହିତ ମୋର ବା କି ସମ୍ବନ୍ଧ ଅଛି ?''

''ମୋର ଅନୁମତିପତ୍ର ନାହିଁ। ମୁଁ ଆପଣଙ୍କ ଅନୁମତିପତ୍ରଟି ଚାହେଁ।''

''ଆପଣ ବୋଧେ ପରିହାସ କରୁଛନ୍ତି।''

ଦାର୍ତାୟାଁ କହିଲା, ''ନା, ମୁଁ ଆଦୌ ପରିହାସ କରୁନାହିଁ। ମୋତେ ଅନୁଗ୍ରହ କରି ଆଗେ ଅନୁମତିପତ୍ରଟି ଦିଅନ୍ତୁ ତ।'' ଉକ୍ତ ଭଦ୍ରବ୍ୟକ୍ତି ସଙ୍ଗେ ସଙ୍ଗେ ତରବାରି କୋଷମୁକ୍ତ କଲେ। ବିଜୁଳିଗତିରେ ଦାର୍ତାୟାଁ ନିଜ ତରବାରି କୋଷମୁକ୍ତ କରି ଚିତ୍କାର କରି କହିଲା, ''ପ୍ଲାଞ୍ଚେଟ୍, ସେ ଲୋକକୁ ଦେଖ, ମୁଁ ତାର ମାଲିକ ସହିତ ମୁକାବିଲା କରୁଛି।''

ଦାର୍ତାୟାଁ ତରବାରିରେ ଭଦ୍ରଲୋକଙ୍କୁ ତିନିଥର ଆକ୍ରମଣ କରି କହିଲା, ''ପ୍ରଥମଟି ଆଥସ୍‌ଙ୍କ ପାଇଁ, ଗୋଟିଏ ପୋର୍ଥସ୍‌ଙ୍କ ପାଇଁ ଓ ଅନ୍ୟଟି ଆରାମିସ୍‌ଙ୍କ ପାଇଁ। ତୃତୀୟ ଆଘାତରେ ଲୋକଜଣକ ତଳେ ପଡ଼ିଗଲେ। ତାହାଙ୍କୁ ମୃତ ମନେକରି ଦାର୍ତାୟାଁ ଅନୁମତିପତ୍ରଖଣ୍ଡିକ ସଂଗ୍ରହ କରିବା ପାଇଁ ତାଙ୍କ ଉପରକୁ ଝୁଙ୍କିପଡ଼ିଲେ। ଉକ୍ତ ଭଦ୍ରବ୍ୟକ୍ତି ହାତରୁ ତରବାରିଟି ଛାଡ଼ିନଥିଲେ। ସେ ଦାର୍ତାୟାଁର ଛାତିକୁ ତରବାରିରେ ଭୁସିଦେଇ କ୍ଷୀଣ ସ୍ୱରରେ କହିଲେ, ''ଏହା ତୁମ ନିଜ ପାଇଁ।'' ଦାର୍ତାୟାଁ ତାର ତରବାରିଟିକୁ ଏଥର ଲୋକଟିର ଶରୀର ମଧ୍ୟରେ ଏପରି ଜୋର୍‌ରେ ଭୁସିଦେଲା ଯେ, ତାହା ତାଙ୍କର ଶରୀର ଭେଦକରି ଭୂମିରେ ପଶିଗଲା। ସେତେବେଳେ ସେ କହିଲା, ''ଆଉ ଏହିଟି ଶେଷଥର ପାଇଁ ମୋ ତରଫରୁ ମଧ।''

ଭଦ୍ରବ୍ୟକ୍ତି ଏଥର ଅଜ୍ଞାନ ହୋଇ ପଡ଼ିରହିଲେ। ଦାର୍ତାୟାଁ ଅନୁମତିପତ୍ରଖଣ୍ଡିକ ନେଇ ଦେଖିଲା ଯେ, ଏହା କାଉଣ୍ଟ ଡି. ୱାର୍ଡ଼ସ୍‌ଙ୍କ ନାମରେ ଲେଖାଯାଇଛି। ସେତେବେଳକୁ ପ୍ଲାଞ୍ଚେଟ୍ ମଧ କାର୍ଯ୍ୟବ୍ୟସ୍ତ। ସେ

ତ ଖୁବ୍ ବଳବାନ୍ ଓ ତତ୍ପର– ସେ ଉକ୍ତ ଭୃତ୍ୟର ପିଠି ଉପରକୁ ଏକ ଡ଼ିଆମାରି ତାକୁ ଭୂମି ଉପରେ ପକାଇଦେଲା । ତା'ପରେ ସେ ତା ପାଟିରେ ଖଣ୍ଡେ ରୁମାଲ ଭର୍ତ୍ତି କରିଦେଲା ଓ ତାହାର ବେଲ୍ଟରେ ତାହାର ମାଲିକ ପଡ଼ିଥିବା ସ୍ଥାନ ନିକଟବର୍ତ୍ତୀ ଏକ ଗଛରେ ବାନ୍ଧିଦେଲା । ତା'ପରେ ଦାର୍ତାୟାଁ କହିଲା, "ବର୍ତ୍ତମାନ ଚାଲ ଆମେ ଗଭର୍ଣ୍ଣରଙ୍କ ପାଖକୁ ଯିବା ।" ପ୍ଲାଞ୍ଚେଟ୍ ଟିକିଏ ବ୍ୟସ୍ତହୋଇ କହିଲା, "ଆପଣ ଯେ ଆଘାତ ପାଇଛନ୍ତି !" ଦାର୍ତାୟାଁ ସେଥିକୁ ଖାତିର ନକରି ଖଣ୍ଡେ ରୁମାଲ ସେହି କ୍ଷତସ୍ଥାନରେ ମାଡ଼ିଦେଲା ଓ ଓଭରକୋଟ୍‌ର ବୋତାମ ତା ଉପରେ ଲଗାଇଦେଲା । ସେ କହିଲା, "ପରେ ସମୟ ହେଲେ ସେ କଥା ବୁଝିବା ।"

ଗଭର୍ଣ୍ଣରଙ୍କ ଅଫିସରେ ଦାର୍ତାୟାଁ ନିଜକୁ ମାଉଣ୍ଟ ଡି. ୱାର୍ଡ଼ସ୍ ବୋଲି ପରିଚୟ ଦେଲା । ଗଭର୍ଣ୍ଣର ଉକ୍ତ ଅନୁମତିପତ୍ର ପରୀକ୍ଷା କରି ଦେଖିଲେ ଯେ, ଏହା ଠିକ୍ ଅଛି । ସେ ବିନା ଦ୍ୱିଧାରେ ଏହା ସ୍ୱାକ୍ଷର କରି ଦାର୍ତାୟାଁଙ୍କୁ ବଢ଼ାଇଦେଲେ । ଗଭର୍ଣ୍ଣର ଟିକିଏ ହସି କହିଲେ, "ଜଣାଯାଉଛି, ମହାମାନ୍ୟ କାର୍ଡିନାଲ୍ କୌଣସି ବ୍ୟକ୍ତିଙ୍କୁ ଇଂଲଣ୍ଡ ନ ଛାଡ଼ିବାକୁ ପ୍ରବଳ ଚେଷ୍ଟାକରିଛନ୍ତି ।" ଦାର୍ତାୟାଁ ଉତ୍ତର କଲା, "ହଁ, ଦାର୍ତାୟାଁ ନାମରେ ଜଣେ ବ୍ୟକ୍ତି ଓ ତାଙ୍କର ତିନିଜଣ ବନ୍ଧୁଙ୍କୁ ଲଣ୍ଡନ ନ ଛାଡ଼ିବାକୁ ବ୍ୟବସ୍ଥା କରିଛନ୍ତି । ସେମାନେ ଲଣ୍ଡନ ଅଭିମୁଖେ ଗତକାଲି ପ୍ୟାରିସ୍ ଛାଡ଼ିଛନ୍ତି ।"

"ଆପଣ ଏ ଲୋକ ଜଣକୁ ଜାଣନ୍ତି କି ?"

"ନିଶ୍ଚୟ, ମୁଁ ମୋତେ ଯେପରି ଚିହ୍ନେ, ତାଙ୍କୁ ମଧ ସେପରି ଜାଣେ ।"

"ଆପଣ ତାଙ୍କର ଟିକିଏ ବର୍ଣ୍ଣନା ଦେଲେ ମୁଁ ତାଙ୍କ ଉପରେ ନଜର ଦେବି ।"

ଦାର୍ତାୟାଁ ବିନା ଦ୍ୱିଧାରେ କାଉଣ୍ଟ ଡି. ୱାର୍ଡ଼ସ ଓ ତାଙ୍କ ଭୃତ୍ୟର ଚିହ୍ନିକିଖି ବର୍ଣ୍ଣନା ଦେଲା ଏବଂ ଜାହାଜ ଶୀଘ୍ର ଛାଡ଼ିଦେବ କହି ଗଭର୍ଣ୍ଣରଙ୍କୁ ଧନ୍ୟବାଦ ଜ୍ଞାପନ କରି ଉକ୍ତ ସ୍ଥାନ ଛାଡ଼ିଲା । କ୍ୟାପ୍‌ଟେନ୍ ମଧ ଜାହାଜ ଛାଡ଼ିବା ପାଇଁ ବ୍ୟଗ୍ର ଥିଲେ । ସେ ଉକ୍ତ ସ୍ୱାକ୍ଷରିତ ଅନୁମତିପତ୍ର ଗ୍ରହଣ କଲେ ଏବଂ ଅନ୍ୟ ଭଦ୍ରବ୍ୟକ୍ତିଙ୍କ ବିଷୟ ଉଠାଇ ସେ ଯିବେ କି ନାହିଁ ବୋଲି ପଚାରିଲେ । ଦାର୍ତାୟାଁ ଉତ୍ତର ଦେଲା, "ସେ ଆଜି ଯାଉନାହାନ୍ତି– ଆଜି ଟିକିଏ କାର୍ଯ୍ୟବ୍ୟସ୍ତ ରହିବେ । ମୁଁ ଆମ ଦୁହିଁଙ୍କ ଭଡ଼ା ଦେଇଦେଉଛି । ତେଣୁ ଆପଣଙ୍କର କିଛି କ୍ଷତି ହେବ ନାହିଁ ।"

ଅଳ୍ପ ସମୟ ମଧରେ ଦାର୍ତାୟାଁ ଓ ପ୍ଲାଞ୍ଚେଟ୍ ଜାହାଜରେ ଚଢ଼ିଲେ ।

ଜାହାଜ ଠିକ୍ ବନ୍ଦର ଛାଡ଼ିବା ପରେ ପରେ ସୂର୍ଯ୍ୟାସ୍ତ ସମୟ ବନ୍ଧୁକ ଆବାଜରେ ଜଣାଇ ଦିଆଗଲା । ଏହାପରେ ଆଉ କୌଣସି ଜାହାଜ ବନ୍ଦର ଛାଡ଼ିପାରିବ ନାହିଁ ।

ବର୍ତ୍ତମାନ ଦାର୍‌ତାୟାଁ ତାର କ୍ଷତ ଦେଖିବା ପାଇଁ ସମୟ ପାଇଲା । ପ୍ରକୃତରେ ଏହା ବିଶେଷ କିଛି ନୁହେଁ । କାରଣ ଡି. ୱାର୍ଡ୍‌ସଙ୍କ ତରବାରି ମୁନ ତାର ଏକ ପଞ୍ଜରାହାଡ଼କୁ ଆଘାତ କରିଥିଲା । ରୁମାଲ ଓ କମିଜ କ୍ଷତ ସହିତ ଲାଗିଯାଇଥିଲା; ତେଣୁ କିଛିମାତ୍ର ରକ୍ତ କ୍ଷୟ ହୋଇ ନ ଥିଲା । ପ୍ଲାଞ୍ଚେଟ୍ ଦୁଇଟି ଶେଯ ଆଣି ଜାହାଜର ଡେକ୍ ଉପରେ ବିଛାଇଦେଲା । ସାମାନ୍ୟ କିଛି ଭୋଜନ ପରେ ସଂଧ୍ୟାର ଶୀତଳ ସମୀରଣରେ ସେମାନେ ସେଠାରେ ଗଭୀର ନିଦ୍ରାରେ ଶୋଇଗଲେ । ତହିଁ ଆରଦିନ ପ୍ରାୟ ଦଶଟା ସମୟକୁ ଡୋଭର ବନ୍ଦରରେ ଜାହାଜ ଲାଗିଲା । ରାତିରେ ପବନ ଧୀରେ ଧୀରେ ବହୁଥିବାରୁ ଜାହାଜ ବିଶେଷ ଗତି ନେଇ ପାରୁନଥିଲା । ଯାହାହେଉ, ଏହି ସାମାନ୍ୟ ବିଳମ୍ବ ସେମାନଙ୍କୁ ଅଧିକ ସମୟ ବିଶ୍ରାମ ନେବାପାଇଁ ସୁବିଧା ଦେଇଥିଲା । ଡୋଭର୍‌ଠାରେ ଜାହାଜରୁ ଓହ୍ଲାଇ ଦାର୍‌ତାୟାଁ ଓ ପ୍ଲାଞ୍ଚେଟ୍ ଲଣ୍ଡନକୁ ଚାଲିଲେ ।

## ଲଣ୍ଡନରେ ଦାର୍‌ତାୟାଁ

ଦାର୍‌ତାୟାଁ ଡ୍ୟୁକ୍‌ଙ୍କ ପ୍ରାସାଦରେ ପହଞ୍ଚିବା ସଙ୍ଗେ ସଙ୍ଗେ ଡ୍ୟୁକ୍‌ଙ୍କ ଗୁପ୍ତମନ୍ତ୍ରଣାଦାତା ପାଟ୍ରିକ୍‌କୁ ଦେଖାକଲା । ସେ ଫରାସୀ ଭାଷା ଭଲ କହିପାରନ୍ତି । ଦାର୍‌ତାୟାଁ ତାଙ୍କୁ ବୁଝେଇଦେଲା ଯେ, ସେ ଏକ ଜୀବନ-ମରଣ ସମସ୍ୟା ନେଇ ପ୍ୟାରିସ୍‌ରୁ ସେଠାକୁ ଆସିଛି । ତେଣୁ ସେ ନିଜେ ସଙ୍ଗେ ସଙ୍ଗେ ଡ୍ୟୁକ୍‌ଙ୍କୁ ଦେଖାକରି କଥା ହେବ ।

"ଶ୍ରୀହଜୁରଙ୍କୁ ମୁଁ କି ନାମ କହି ଜଣାଇବି ?"

"ଆପଣ କହନ୍ତୁ ଯେ, ନୂଆପୋଲ ଉପରେ ଯେଉଁ ବ୍ୟକ୍ତି ତାଙ୍କ ସହିତ କଳହ କରିଥିଲା ।"

"ସେ ତ ଏକ ଅଦ୍ଭୁତ ପ୍ରକାର ପରିଚୟ ଦେବା ହେବ !"

"ଏହା ସବୁଠାରୁ ଉତ୍ତମ ପରିଚୟ ହେବ ।"

ଡ୍ୟୁକ୍ ଏ ଖବର ପାଇ ପ୍ୟାରିସ୍‌ର ନୂଆପୋଲ ଉପରେ ଘଟିଥିବା

ଘଟଣା ମନେପକାଇଲେ ଓ ଦାର୍‌ତାୟାଁଙ୍କୁ ପାଖକୁ ଡକାଇଲେ। ପାଟ୍ରିକ୍ ସେ ସ୍ଥାନ ଛାଡ଼ିବା ସଙ୍ଗେ ସଙ୍ଗେ ଡ୍ୟୁକ୍ କହିଲେ, "ଆଶାକରେ ରାଣୀଙ୍କ ଉପରେ ସେପରି କୌଣସି ବିପଦ ପଡ଼ିନାହିଁ।" ଦାର୍‌ତାୟାଁ ରାଣୀଙ୍କ ପତ୍ରଖଣ୍ଡି ଡ୍ୟୁକ୍‌ଙ୍କ ହାତକୁ ବଢ଼ାଇ ଦେଇ ଦେଇ କହିଲା, "ଆପଣ ଏ ପତ୍ର ଗ୍ରହଣ କରି ପାଠକରନ୍ତୁ। ସେ ବଡ଼ ବିପଦଗ୍ରସ୍ତ ଓ ଶ୍ରୀହଜୁର କେବଳ ତାଙ୍କୁ ରକ୍ଷାକରିପାରିବେ।"

ପତ୍ରଖଣ୍ଡିକ ପଢ଼ି ଡ୍ୟୁକ୍‌ଙ୍କ ମୁହଁ ଶୁଖିଗଲା ଏବଂ ସେ କହିଲେ, "ହେ ଭଗବାନ! ମୁଁ ଏ କ'ଣ ପଢୁଛି!" ଦାର୍‌ତାୟାଁ ଆଡ଼େ ବୁଲିପଡ଼ି ସେ କହିଲେ, "ଆଚ୍ଛା, ଆପଣ ଦୟାକରି ମୋ ପଛେ ପଛେ ଆସନ୍ତୁ।" କେତେକ ଦୀର୍ଘ ବାରଣ୍ଡା ଅତିକ୍ରମ କରି ଦାର୍‌ତାୟାଁ ଡ୍ୟୁକ୍‌ଙ୍କ ପଛେ ପଛେ ଗଲା ଏବଂ ତାଙ୍କର ଏକ ସ୍ୱତନ୍ତ୍ର ବୈଠକ ଗୃହରେ ପ୍ରବେଶ କଲା। ଡ୍ୟୁକ୍ କହିଲେ, "ଆପଣ ଯଦି ସୌଭାଗ୍ୟବଶତଃ ରାଣୀଙ୍କ ସାମନାକୁ ଆସନ୍ତି, ତାହାହେଲେ ଏଠାରେ ଯାହା ଦେଖିଲେ ତାଙ୍କୁ କହିବେ।"

ଡ୍ୟୁକ୍ କୋଠରି ମଧ୍ୟରେ ମୋଟା ରେଶମ କନାର ଏକ ପରଦା ପଛରେ ଥିବା ଗୋଟିଏ ଦରଜା ପାଖକୁ ଗଲେ। ସେ ସେହି ଦରଜାର ଚାବି ଖୋଲିଲେ ଏବଂ ଦାର୍‌ତାୟାଁଙ୍କୁ ଆଉ ଗୋଟିଏ ଛୋଟ କୋଠରି ମଧ୍ୟକୁ ନେଲେ। ଉକ୍ତ କୋଠରିଟି ବହୁସଂଖ୍ୟକ ମହମବତିଦ୍ୱାରା ଆଲୋକିତ ହୋଇଥିଲା। ସୁବର୍ଣ୍ଣଖଚିତ ସୁନ୍ଦର ପରଦାମାନ ଉକ୍ତ କୋଠରିର କାନ୍ଥରେ ଝୁଲୁଥିଲା ଏବଂ ଦରଜା ସମ୍ମୁଖ କାନ୍ଥରେ ଫ୍ରାନ୍‌ସର ରାଣୀ ଆନ୍‌ଙ୍କର ଏକ ବିରାଟ ତୈଳଚିତ୍ର ଝୁଲୁଥିଲା। ଏହି ତୈଳଚିତ୍ରଟି ଏତେ ଜୀବନ୍ତ ଥିଲା ଯେ, ଦାର୍‌ତାୟାଁ ତାହା ଦେଖି ଥକ୍କା ହୋଇଗଲା। ଠିକ୍ ସେହି ତୈଳଚିତ୍ର ତଳକୁ ଏକ ଛୋଟ ଟେବୁଲ ଉପରେ ଗୋଟିଏ ଛୋଟ ବାକ୍‌ସ ଥିଲା। ଡ୍ୟୁକ୍ ଟେବୁଲ ପାଖକୁ ଅତି ଧୀର ପଦକ୍ଷେପରେ ଯାଇ ଉକ୍ତ ବାକ୍‌ସଟି ଖୋଲିଲେ ଓ ତା'ଭିତରୁ ରାଣୀଙ୍କଠାରୁ ଉପହାର ପାଇଥିବା ହୀରାମାଳଟି ଉଠେଇ ଆଣିଲେ। ଡ୍ୟୁକ୍ କହିଲେ, "ମୁଁ ପ୍ରତିଜ୍ଞା କରିଥିଲି, ଆଜୀବନ ଏହି ହୀରାମାଳକୁ ପାଖରୁ ଛାଡ଼ିବି ନାହିଁ। ତେବେ ରାଣୀ ଯେତେବେଳେ ଏହା ମଗାଇଛନ୍ତି, ତାଙ୍କ ଇଚ୍ଛାରୁ ତ ମୁଁ ବାହାରି ଯାଇପାରିବିନାହିଁ।"

ଏହି କଥା କହୁଥିବା ସମୟରେ ଡ୍ୟୁକ୍ ଅତି ସ୍ନେହରେ ପ୍ରତ୍ୟେକ ହୀରକକୁ ହାତରେ ପରୀକ୍ଷା କରି ଦେଖୁଥାନ୍ତି। ଦାର୍‌ତାୟାଁ ଦେଖିଲା ଡ୍ୟୁକ୍ ଏହି ହୀରକମାଳାଟିକୁ ବାକ୍‌ସ ମଧ୍ୟରେ ରଖିବାକୁ ଯାଇ ହଠାତ୍ ଚମକି

ପଡ଼ି ଚାପାଗଳାରେ ଚିତ୍କାର କରିଉଠିଲେ । ଦାର୍‌ତାୟାଁ କହିଲା, ''ପ୍ରଭୁ, କ'ଣ ହେଲା ? ଏଥିରେ କିଛି ଭୁଲ ରହିଗଲା କି ?'' ଡ୍ୟୁକ୍ ବ୍ୟସ୍ତହୋଇ କହିଲେ, ''ହେ ଭଗବାନ, ଦୁଇଟି ହୀରକ ସହ ରିବନ ଏଥିରେ ନାହିଁ । ବାରଟି ଥିବା ସ୍ଥଳେ ଜମା ଦଶଟି ଅଛି ।''

''ହଜୁର ସେଗୁଡ଼ିକ ହଜାଇଦେଇଛନ୍ତି କିମ୍ବା ସେଗୁଡ଼ିକ ବୋଧହୁଏ ଚୋରିଯାଇଛି ।''

ଡ୍ୟୁକ୍ ସାଙ୍ଗେ ସାଙ୍ଗେ କହିଲେ, ''ସେ ଦୁଇଟି ହୀରା ଚୋରିଯାଇଛି । ଏଥିରେ ନିଶ୍ଚୟ କାର୍ଡିନାଲ୍‌ର ହାତ ଅଛି । ଦେଖ ଏଥିରୁ ଦୁଇଗୋଟି ରିବନ୍ କାଟିନିଆଯାଇଛି ।'' ଡ୍ୟୁକ୍ କୋଠରି ମଧ୍ୟରେ ଚିନ୍ତିତ ଭାବରେ ପଦଚାରଣ କରୁ କରୁ କହିଲେ, ''ମୁଁ ଏବେ ଜାଣିଲି । ଉଇଣ୍ଡସର୍‌ଠାରେ ଦୁଇ ରାତି ପୂର୍ବେ ରାଜା ଏକ ବଲ୍‌ନୃତ୍ୟର ଆୟୋଜନ କରିଥିଲେ । ଆଉ ସେହି ଗୋଟିଏ ଥର ମାତ୍ର ମୁଁ ଏହି ହୀରାଗୁଡ଼ିକ ପରିଧାନ କରିଥିଲି । ଉଇଣ୍ଡସର୍ କାଉଣ୍ଟେସ୍‌ଙ୍କ ସହିତ ମୋର ଆଗରୁ କଳହ ହୋଇଥିଲା । ସେ ସେଦିନ ମୋ ସହିତ ବନ୍ଧୁତାର ବେଶ୍ ଛଳନା କରିଥିଲେ; କିଛି ସମୟ ପାଇଁ ମୋ ସହିତ ନୃତ୍ୟ ମଧ କରିଥିଲେ । ମୁଁ ନିଶ୍ଚିତ ଭାବରେ ଜାଣେ ଯେ, ସେ କାର୍ଡିନାଲ୍‌ଙ୍କର ଜଣେ ଗୁପ୍ତଚର । ଆଚ୍ଛା, ପ୍ୟାରିସ୍‌ରେ ବଲ୍‌ନୃତ୍ୟର ଆୟୋଜନ କରାଯାଇଛି ?''

''ଆସନ୍ତା ସୋମବାର ଦିନ, ହଜୁର !''

''ସୋମବାର ! ଆଉ ଜମା ପାଞ୍ଚଦିନ ରହିଲା ।'' ଏହି କଥା ସେ ବିଶେଷ ଚିନ୍ତିତଭାବରେ କହିଲେ । ତାହାପରେ ସେ ଦରଜା ପାଖକୁ ଯାଇ ବଡ଼ପାଟିରେ ଡାକିଲେ, ''ପାଟ୍ରିକ୍, ମୋର ସେକ୍ରେଟେରୀଙ୍କୁ ଡାକ ଓ ତା' ସଙ୍ଗେ ସଙ୍ଗେ ମୋର ବ୍ୟକ୍ତିଗତ ବଣିଆକୁ ଡକାଅ ।''

ଅଳ୍ପ କେତେ ମିନିଟ୍ ପରେ ସେକ୍ରେଟେରୀ ଆସି ପହଞ୍ଚିଲାବେଳକୁ ବକିଙ୍ଗହାମ୍ ଖୁବ୍ ଶୀଘ୍ର ଶୀଘ୍ର କଣ ଲେଖିଚାଲିଛନ୍ତି । ଡ୍ୟୁକ୍ କହିଲେ, ''ଜାକ୍‌ସନ୍ !'' ଏହି ଆଦେଶନାମାଟି ମୁହୂର୍ତ୍ତେମାତ୍ର ବିଳମ୍ବ ନକରି ପଠାଇଦିଅ ।''

ବକିଙ୍ଗହାମ୍ ବର୍ତ୍ତମାନ ଦାର୍‌ତାୟାଁକୁ କହିଲେ, ''ଆମେ ଅନ୍ତତଃ ସେପଟୁ ନିରାପଦ । ଯଦି ଏ ଭିତରେ ହୀରା ଦୁଇଟି ଫ୍ରାନ୍‌ସରେ ପହଞ୍ଚି ନଥିବ, ତାହାହେଲେ ତୁମେ ପହଞ୍ଚିଲାପୂର୍ବରୁ ତାହା ପହଞ୍ଚିବ ନାହିଁ ।''

''ସେକଥା କିପରି ହେବ ହଜୁର ?''

''ମୁଁ ବର୍ତ୍ତମାନ ଆଦେଶ ଦେଲି ଯେ, ମୋର ବିନା ଅନୁମତିରେ

କୌଣସି ଜାହାଜ ଇଂଲଣ୍ଡର କୌଣସି ବନ୍ଦର ଛାଡ଼ିପାରିବନାହିଁ।''

ଅଳ୍ପ କେତେ ମିନିଟ୍ ମଧ୍ୟରେ ବଣିଆ ସେଠାରେ ପ୍ରବେଶ କଲା। ଡ୍ୟୁକ୍ କହିଲେ, ''ଓଗିଲ୍ଭି, ଏହି ହୀରାଗୁଡ଼ିକୁ ଦେଖି ପ୍ରତ୍ୟେକଟି ପଦକର ମୂଲ୍ୟ ନିରୂପଣ କର।'' ଉକ୍ତ ବଣିଆ ହୀରାଗୁଡ଼ିକ ଭଲରୂପେ ପରୀକ୍ଷା କରି କହିଲା, ''ପ୍ରତ୍ୟେକ ହୀରାର ମୂଲ୍ୟ ୧୫୦୦ ପିସ୍ତୋଲ ହେବ।''

''ଯେଉଁ ଦୁଇଟି ହୀରା ଏଥିରେ ନ ଥିବାର ଦେଖୁଛ, ତାହାକୁ ତିଆରି କରି ଏଥିରେ ଭରିଦେବାପାଇଁ ତୁମେ କେତେ ସମୟ ନେବ ?''

''ପ୍ରଭୁ, ପ୍ରାୟ ଆଠଦିନ ଲାଗିବ।''

''ତୁମେ ଯେବେ ଏହାକୁ ପଅରଦିନ ମଧ୍ୟରେ କରିଦେବ, ତାହାହେଲେ ମୁଁ ତୁମକୁ ଏହାର ଦୁଇଗୁଣ ମୂଲ୍ୟ ଦେବି।''

''ମୁଁ ଏହା କରିବାପାଇଁ ଯଥାସାଧ ଚେଷ୍ଟା କରିବି।''

''ବେଶ୍, କେବଳ ଖାଲି ସେତିକି ନୁହେଁ, ଏହି ହୀରାଗୁଡ଼ିକ ତୁମ ଛଡ଼ା ଅନ୍ୟ କାହାକୁ ଦେବାର ମୋର ବିଶ୍ୱାସ ନାହିଁ। ତେଣୁ ତୁମକୁ ଏହି ରାଜପ୍ରାସାଦରେ କାମ କରିବାକୁ ହେବ ଓ କାମ ଶେଷ ନ କଲା ପର୍ଯ୍ୟନ୍ତ ମୋର ବନ୍ଦୀ ବୋଲି ନିଜକୁ ମନେକରିବ। ତୁମେ ଯେଉଁମାନଙ୍କର ସାହାଯ୍ୟ ଗ୍ରହଣ କରିବ ବା ଯେଉଁ ଯେଉଁ ଜିନିଷ ଦରକାର କରିବ, ସେ ସମସ୍ତର ନାମ ମୋତେ କହ। ତୁମକୁ ସବୁ ଜିନିଷ ଯୋଗାଇଦେବା ଭାର ପାଟ୍ରିକ୍ ଉପରେ।''

ପ୍ରାସାଦର ଏକ କୋଠରିରେ ବଣିଆ ତା'ର କାମ ଆରମ୍ଭ କରିଦେଲା ଓ ଦୁଇଜଣ ସୈନ୍ୟ ବାହାରେ ଜଗିରହିଲେ। ପାଟ୍ରିକ୍‌ଙ୍କର ବିନା ଆଦେଶରେ ସେ ଘରକୁ କେହି ଆସିପାରିବେ ନାହିଁ କି ସେ ଘରୁ ବାହାରକୁ କେହି ଯାଇପାରିବେ ନାହିଁ ବୋଲି ସେମାନଙ୍କୁ ନିର୍ଦ୍ଦେଶ ଦିଆଗଲା।

## ରାଣୀଙ୍କ ସେବାରେ

ତୃତୀୟ ଦିନ ସୁଦ୍ଧା ଦୁଇଟିଯାକ ପଦକ ତିଆରି ଶେଷ ହେଲା। ଠିକ୍ ସେହିଭଳି ହୀରା ପାଇବାରେ ଅସୁବିଧା ହେତୁ ଟିକିଏ ବିଳମ୍ବ ହୋଇଗଲା। ସେ ଯାହାହେଉ, ଉକ୍ତ ପଦକ ଦୁଇଟି ଏପରି ଭାବରେ ତିଆରି ହୋଇଥିଲା ଯେ, ନିଜେ ବକିଂହାମ୍ ଅନ୍ୟାନ୍ୟ ପଦକ ଓ ନୂତନ ପଦକ ଦୁଇଟି

ମଧ୍ୟରେ କୌଣସି ଫରକ୍ ଜାଣିପାରିଲେ ନାହିଁ। ସେ ଦାର୍‌ତାୟାଁଙ୍କୁ ଡକାଇ କହିଲେ, "ତୁମେ ଯେଉଁ ଅଳଙ୍କାର ପାଇଁ ଆସିଥିଲ, ତାହା ଏହି। ତୁମେ ଦେଖିଲ ଯେ, ଯାହା କରିବାର କଥା ମୁଁ ଯଥାଶକ୍ତି ସେସବୁ କରିଛି।"

"ନିଶ୍ଚିତ ହୁଅନ୍ତୁ ପ୍ରଭୁ! ମୁଁ ଯାହା ସବୁ ଦେଖିଲି ଓ ହଜୁର ଯାହା ସବୁ କଲେ, ସେ ସମସ୍ତ କଥା ରାଣୀଙ୍କୁ ନିଶ୍ଚୟ କହିବି। ମୋତେ କଣ ବିନା ବାକ୍‌ସରେ ଅଳଙ୍କାରଟି ନେବାକୁ ହେବ?"

"ବାକ୍‌ସଟି ତୁମକୁ ଅସୁବିଧାରେ ପକାଇବ। ତା'ଛଡ଼ା ମୋ ପାଖରେ କେବଳ ସେତିକି ମାତ୍ର ସନ୍ତକ ରହିଲା। ମୁଁ ଏହି ବାକ୍‌ସଟି ରଖିଲି ବୋଲି କହିବ।"

ଡ୍ୟୁକ୍‌ଙ୍କର ଦୃଷ୍ଟି ଏହି ବୀର ଗାସ୍‌କନ୍ ଯୁବକର ମୁଖ ଉପରେ ନିବଦ୍ଧ ଥିଲା। ତା'ପରେ ସେ କହିଲେ, "ତୁମେ ମୋର ଯେଉଁ ଉପକାର କଲ, ସେ ଋଣ ମୁଁ କିପରି ପରିଶୋଧ କରିବି କୁହ?" ଦାର୍‌ତାୟାଁ ଟିକିଏ ସଙ୍କୁଚିତ ହୋଇ କହିଲା, "ପ୍ରଭୁ, ମୁଁ ଫ୍ରାନ୍‌ସ ରାଜାଙ୍କ ସେବକ; ତେଣୁ ରାଣୀଙ୍କର ମଧ୍ୟ। ମୁଁ ଯାହା କିଛି କରିଛି, ରାଣୀଙ୍କ ପାଇଁ କରିଛି।"

ଡ୍ୟୁକ୍ ଚାପାଗଳାରେ କହିଲେ, "ଆମେ କହୁ, 'ସ୍କଟ୍‌ମାନଙ୍କ ଭଳି ବୀର'।" ଡ୍ୟୁକ୍‌ଙ୍କ ଚିନ୍ତାଧାରାର ଖିଅ ଧରି ଦାର୍‌ତାୟାଁ କହିଲା, "ଆଉ ଆମେ କହୁ, 'ଜଣେ ଗାସ୍‌କନ୍ ଭଳି ବୀର'। ଗାସ୍‌କନ୍‌ମାନେ ଫ୍ରାନ୍‌ସର ସ୍କଟ୍।"

ଡ୍ୟୁକ୍ କହିଲେ, "ବେଶ୍ ବେଶ୍, ମୋ କଥା ଶୁଣ। ଟେମସ୍ ନଦୀର ଏପଟେ ଥିବା ଛୋଟ ପୋତାଶ୍ରୟ ନିକଟକୁ ଯାଇ ସଣ୍ଡ୍ ନାମକ ଜାହାଜକୁ ତଲାସ କର ଏବଂ ମୋର ଏ ପତ୍ର କ୍ୟାପ୍‌ଟେନ୍‌କୁ ଦିଅ। ସେ ତୁମକୁ ସେଣ୍ଟ୍‌ଭାଲେରୀ ନାମକ ଗୋଟିଏ ଫରାସୀ ମାଛଧରା ବନ୍ଦରକୁ ନେଇଯିବେ। ତୁମେ ସେଠାରେ ଅବତରଣ କରିବ। ଅବଶ୍ୟ ସେଠାରେ କାର୍ଡିନାଲ୍‌ଙ୍କର କୌଣସି ବ୍ୟକ୍ତି ତୁମକୁ ସ୍ୱାଗତ କରିବାପାଇଁ ନ ଥିବେ। ତୁମେ ସେଠାରେ ପହଞ୍ଚି ସେଠାର ଏକମାତ୍ର ପାନ୍ଥଶାଳାର ମାଲିକଙ୍କୁ ଦେଖାକରିବ ଓ ତାଙ୍କୁ 'ଫରୱାର୍ଡ଼' ପଦଟି କହିବ। ସେ ତୁମକୁ ଗୋଟିଏ ସୁସଜ୍ଜିତ ଘୋଡ଼ା ଯୋଗାଇଦେବେ ଓ ଯେଉଁ ପଥରେ ତୁମକୁ ଯିବାକୁ ହେବ, ତାହା ମଧ୍ୟ ସେ ବତାଇଦେବେ। ତୁମ ରାସ୍ତାରେ ଠିକ୍ ସେମିତି ତିନିଗୋଟି ପାନ୍ଥଶାଳା ପାଇବ। ପ୍ରତ୍ୟେକ ସ୍ଥାନରେ କିନ୍ତୁ ତୁମେ ତୁମର ପ୍ୟାରିସ୍ ଠିକଣା ଲେଖିଯାଇଥିବ। ଅନ୍ତତଃ ମୋ ପାଇଁ ସେତିକି ଅନୁଗ୍ରହ କରିବ ବୋଲି ଆଶା। ସେଠାରେ

ତୁମେ ଯେଉଁ ଘୋଡ଼ାଗୁଡ଼ିକୁ ଛାଡ଼ିଯାଇଥିବ, ସେଗୁଡ଼ିକୁ ପରେ ପଠାଇଦିଆଯିବ। ତୁମେ ମୋ ଘୋଡ଼ାଗୁଡ଼ିକୁ ଦେଖିଛ। ମୋର ଅନୁରୋଧ, ତୁମେ ସେଥିରୁ ଗୋଟିଏ ନିଜପାଇଁ ନେବ ଓ ତୁମର ତିନିଜଣ ବନ୍ଧୁଙ୍କୁ ଗୋଟିଏ କରି ଗ୍ରହଣ କରିବାକୁ କହିବ।'' ଦାର୍‌ତାୟାଁ ବିନା ଦ୍ୱିଧାରେ ଉପହାର ଗ୍ରହଣ କରି ଡ୍ୟୁକ୍‌ଙ୍କୁ ଧନ୍ୟବାଦ ଜ୍ଞାପନକଲା। ତାହାପରେ ସେ ଡ୍ୟୁକ୍‌ଙ୍କଠାରୁ ବିଦାୟନେଇ ଦ୍ରୁତ ପଦକ୍ଷେପରେ ବନ୍ଦର ଆଡ଼କୁ ଚାଲିଲା।

'ସଡ୍'କୁ ପାଇବାପାଇଁ ଦାର୍‌ତାୟାଁକୁ କିଛି ଅସୁବିଧା ହୋଇ ନ ଥିଲା। କ୍ୟାପ୍‌ଟେନ୍ ମଧ ଆଉ ଜଣେ ଯାତ୍ରୀ ଗ୍ରହଣ କରିବା ପାଇଁ ପ୍ରସ୍ତୁତ ଥିଲେ ଏବଂ ସେ ଡ୍ୟୁକ୍‌ଙ୍କ ପତ୍ରପ୍ରାପ୍ତିମାତ୍ରେ ତାହାକୁ ଜାହାଜ ଭିତରକୁ ନେଇଗଲେ ଓ ଜାହାଜ ଛାଡ଼ିଦେଲେ। ଆଉ ପଚାଶଗୋଟି ଜାହାଜ ବନ୍ଦର ଛାଡ଼ିବାପାଇଁ ପ୍ରସ୍ତୁତ ହୋଇଥିଲା; ମାତ୍ର ଡ୍ୟୁକ୍ ତହିଁ ଆରଦିନ ପର୍ଯ୍ୟନ୍ତ ସେ ସବୁ ଛାଡ଼ିବାପାଇଁ ଅନୁମତି ଦେଇନଥିଲେ।

ତହିଁ ଆରଦିନ ପ୍ରଭାତରେ ଦାର୍‌ତାୟାଁ ସେଣ୍ଟଭାଲେରୀଠାରେ ପହଞ୍ଚି ସଙ୍ଗେ ସଙ୍ଗେ ପାନ୍ଥଶାଳାକୁ ଚାଲିଗଲା। ପାନ୍ଥଶାଳା ମାଲିକ କହିଲା, ''ଆପଣ ନିଉଚଟିଲ୍ ଯାଆନ୍ତୁ ଏବଂ ଗୋଲଡ଼େନ୍‌ହାରୋଠାରେ ଠିକ୍ ଏହି 'ପାଶ୍‌ୱାର୍ଡ଼'ଟି ବ୍ୟବହାର କରନ୍ତୁ। ଉକ୍ତ ପାନ୍ଥଶାଳାଠାରେ ଆପଣଙ୍କୁ ଆଉ ଗୋଟିଏ ନୂତନ ଅଶ୍ୱ ଯୋଗାଇଦିଆଯିବ। ସେଇଟି ମଧ ଏହାପରି ଭଲ।''

''ମୋତେ କ'ଣ ସେଠାରେ କିଛି ଦେବାକୁ ହେବ ?''

''ନା, ଆଗରୁ ସବୁ କିଛି ଦିଆସରିଛି; ବରଂ ଆବଶ୍ୟକତାଠୁଁ ଅଧିକା ମୂଲ୍ୟ ଦିଆଯାଇଛି।''

ନିଉଚଟିଇଠାରେ ପୂର୍ବକଥା ଅନୁଯାୟୀ ଦାର୍‌ତାୟାଁ କାର୍ଯ୍ୟ କଲା; କିନ୍ତୁ ଏଠାର ପାନ୍ଥଶାଳା ମାଲିକ ତାକୁ ପ୍ୟାରିସ୍ ଠିକଣା ଦେବାପାଇଁ କହିଲେ। ଦାର୍‌ତାୟାଁ ନିମ୍ନଲିଖିତ ଠିକଣା ଦେଲା : ''ଦାର୍‌ତାୟାଁ – ମସ୍‌କେଟିଅର୍‌ମାନଙ୍କର ପ୍ରଧାନ କାର୍ଯ୍ୟାଳୟ, ପ୍ୟାରିସ୍'' ପାନ୍ଥଶାଳା ମାଲିକ କହିଲା, ''ଆପଣ ବର୍ତ୍ତମାନ ରୁଏନ୍ ରାସ୍ତାରେ ଯାଆନ୍ତୁ। 'ଇକୋଅସ୍' ନାମକ ସ୍ଥାନରେ ଆପଣଙ୍କ ପାଇଁ ଅନ୍ୟ ଏକ ଅଶ୍ୱ ପ୍ରସ୍ତୁତ ହୋଇଥିବ।

''ସେହି ପାଶ୍‌ୱାର୍ଡ଼ ତ ?''

''ଏକଦମ୍ ଠିକ୍।''

ଇକୋଅସ୍‌ଠାରେ ପୂର୍ବମତେ ସବୁ ପ୍ରସ୍ତୁତ ହୋଇଥିଲା। ଦାର୍‌ତାୟାଁ ସେଠାରେ ଅଶ୍ୱ ପରିବର୍ତ୍ତନ କଲା, ନିଜର ଠିକଣା ଦେଲା ଏବଂ କେଉଁ

ରାସ୍ତାରେ ଯିବାକୁ ହେବ, ତାହା ମଧ ବୁଝିଲା । ଏହାପରେ ପୋଣ୍ଟୋସ୍‌ଠାରେ ଦାର୍‌ତାୟାଁ ଶେଷ ଥର ପାଇଁ ଅଶ୍ୱ ପରିବର୍ତ୍ତନ କଲା ଓ ଠିକ୍ ସକାଳ ନଅଟା ପୂର୍ବରୁ ସେ ପ୍ୟାରିସ୍ ନଗରୀରେ ପ୍ରବେଶ କଲା । ସ୍ଥଳପଥରେ ସମସ୍ତ ଦୂରତା ଅତିକ୍ରମ କରିବାକୁ ତାକୁ ବାରଘଣ୍ଟା ଲାଗିଥିଲା ।

ପ୍ୟାରିସ୍‌ରେ ପହଞ୍ଚିବାର ମାତ୍ର ଏକ ଘଣ୍ଟା ମଧରେ ଦାର୍‌ତାୟାଁ ଏମ୍. ଡି. ଟ୍ରିଭିଲ୍‌ଙ୍କୁ ଦେଖାଗଲା । ଦାର୍‌ତାୟାଁର ମୁଖରୁ ସେ ଜାଣିଗଲେ ଯେ, କାର୍ଯ୍ୟ ସାଧିତ ହୋଇଛି । ଟ୍ରିଭିଲ୍ ଟିକିଏ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ଚାହିଁ କହିଲେ, "ଆଥସ୍ ଓ ତାଙ୍କ ବନ୍ଧୁଗଣ ଛୁଟିରୁ ଫେରିଆସିଛନ୍ତି ଏବଂ ଲୋଭର ରାଜପ୍ରାସାଦରେ ସଦଳବଳ ତାଙ୍କ କର୍ତ୍ତବ୍ୟ ସଂପାଦନ କରୁଛନ୍ତି । ଏମ୍. ଡେସ୍. ଏସାର୍ଟସ୍‌ଙ୍କ ରକ୍ଷୀମାନେ ଆଜି ରାତିରେ ଟାଉନ୍‌ହଲ୍‌ଠାରେ ବଲ୍‌ନୃତ୍ୟର ଆୟୋଜନଯୋଗେ ପହରାଦେବା କାର୍ଯ୍ୟରେ ନିଯୁକ୍ତ ଅଛନ୍ତି । ଆଉ ତୁମେ ତୁମର ପୂରା ପୋଷାକରେ ଯାଇ ଯଥାଶୀଘ୍ର ଏସାର୍ଟସ୍‌ଙ୍କୁ ଦେଖାକର । ସେ ବର୍ତ୍ତମାନ ତାଙ୍କ ପ୍ରଧାନ କାର୍ଯ୍ୟାଳୟରେ ତୁମ ଆସିବାକୁ ଅପେକ୍ଷା କରି ରହିଛନ୍ତି ।"

ଦାର୍‌ତାୟାଁ ଯିବାକୁ ବାହାରିବାରୁ ଏମ୍. ଡି. ଟ୍ରିଭିଲ୍ ଶିଢ଼ିର ଶେଷ ପାହାଚ ପର୍ଯ୍ୟନ୍ତ ଯାଇ ତାକୁ ବଳେଇଦେଇ ଆସିଲେ ।

## କାର୍ଡିନାଲ୍ ନିରାଶହେଲେ

ଯେଉଁ ଦିନ ଦାର୍‌ତାୟାଁ ପ୍ୟାରିସ୍‌କୁ ଫେରିଆସିଲା, ସେଦିନ ରାଜା ଓ ରାଣୀ ବଲ୍‌ନୃତ୍ୟରେ ଯୋଗଦେଉଥିବା କଥା ସାରା ନଗରୀରେ ସମସ୍ତଙ୍କ ମୁହଁରୁ ଶୁଣାଯାଉଥିଲା । ସନ୍ଧ୍ୟା ଛ'ଟା ସମୟକୁ ନିମନ୍ତ୍ରିତ ବ୍ୟକ୍ତିଗଣ ବଲ୍‌ନୃତ୍ୟ ନିମନ୍ତେ ନିର୍ଦ୍ଦିଷ୍ଟ ଟାଉନ୍‌ହଲ୍‌ରେ ପହଞ୍ଚିବାକୁ ଆରମ୍ଭ କଲେ । ଏ ବ୍ୟକ୍ତିଗଣ ସେମିତି ନାମଜାଦା ଲୋକ ନଥିଲେ । ଏମାନେ ବିଶେଷ ଭାବରେ ଅନ୍ୟମାନଙ୍କୁ ଦେଖିବାକୁ ଆସିଥିଲେ; ସେମାନଙ୍କୁ ଅନ୍ୟମାନେ ଦେଖନ୍ତୁ ବା ଜାଣନ୍ତୁ ଏ. ଉଦ୍ଦେଶ୍ୟ ଯେପରି ସେମାନଙ୍କର ନଥିଲା । ପ୍ରଧାନ ହଲ୍‌ରେ ସେମାନଙ୍କୁ ସେମାନଙ୍କ ନିର୍ଦ୍ଦିଷ୍ଟ ସ୍ଥାନ ଦେଖାଇଦିଆଯାଇଥିଲା ।

ଠିକ୍ ନଅଟା ପୂର୍ବରୁ ନଗରୀର ଅଫିସରବୃନ୍ଦ ଓ ସେମାନଙ୍କ ପତ୍ନୀମାନେ ଆସି ପହଞ୍ଚିଲେ । ଏମାନଙ୍କୁ ମଞ୍ଚ ନିକଟରେ ଆସନ ଦିଆଗଲା । ଉକ୍ତ

ମଞ୍ଚ ଉପରେ ରାଣୀ ଓ ତାଙ୍କ ସହଚରୀବୃନ୍ଦଙ୍କ ପାଇଁ ସ୍ଥାନ ନିର୍ଦ୍ଦେଶ କରାଯାଇଥିଲା। ଠିକ୍ ମଧ୍ୟରାତ୍ରରେ ରାଜା ଉପଯୁକ୍ତ ପୋଷାକ ପରିଧାନ କରି ଆସି ପହଞ୍ଚିଲେ। ପ୍ୟାରିସ୍‌ର ମେୟର ସ୍ୱାଗତ ସମ୍ଭାଷଣ ଦେବା ପରେ ରାଜାଙ୍କୁ ପାର୍ଶ୍ୱବର୍ତ୍ତୀ ଗୋଟିଏ କୋଠରିକୁ ନିଆଗଲା ରାଣୀ ଆସିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ। ପ୍ରତ୍ୟେକ ବ୍ୟକ୍ତି ଅନୁମାନ କରି ମନ୍ତବ୍ୟ ଦେବାକୁ ଲାଗିଲେ ଯେ, 'ରାଜା ବହୁତ ମଳିନ ଓ ଚିନ୍ତିତ ଜଣାଯାଉଛନ୍ତି।'

ଅଳ୍ପ ସମୟ ପରେ ରାଣୀ ଓ ତାଙ୍କର ସହଚରୀମାନେ ଆସିବା ସମ୍ବାଦ ବିଗୁଲ ବଜାଇ ଜଣାଇଦିଆଗଲା। ଫଳରେ ପାଟିତୁଣ୍ଡ ବନ୍ଦ ହୋଇଗଲା ଏବଂ ସମସ୍ତଙ୍କର ଆଖି ପ୍ରଧାନ ପ୍ରବେଶଦ୍ୱାର ଉପରେ ନିବଦ୍ଧ ହେଲା। ମଞ୍ଚର ପଶ୍ଚାଦ୍‌ଭାଗରେ ଥିବା ଏକ ପରଦା ଆଢୁଆଳରୁ ହଠାତ୍ କାର୍ଡିନାଲ୍‌ଙ୍କ ଶୁଖିଲା ମୁହଁ ଦେଖାଗଲା। ତାଙ୍କର ଦୃଷ୍ଟି ରାଣୀଙ୍କ ଉପରେ ପଡ଼ିବା ପରେ ତାଙ୍କ ମୁହଁରେ ସାମାନ୍ୟ ହସ ଦେଖାଦେଲା – ତାହା ଯେପରି ଏକ ଉଦ୍ଦେଶ୍ୟମୂଳକ ହସ। ସେ ଲକ୍ଷ୍ୟ କଲେ, ରାଣୀ ତାଙ୍କର ସେହି ହୀରାବସା ଅଳଙ୍କାର ତାଙ୍କ ପୋଷାକ ଉପରେ ପରିଧାନ କରିନାହାନ୍ତି।

ରାଣୀ କ୍ରମେ ସୁଦୀର୍ଘ ହଲ୍‌ର ମଧ୍ୟବର୍ତ୍ତୀ ସ୍ଥାନକୁ ଆସିଲେ ଓ ଆସିବା ସମୟରେ ଉଭୟ ବାମ ଓ ଡାହାଣ ପଟକୁ ସ୍ମିତହାସ୍ୟ ସହ ଚାହିଁ ଭଦ୍ରବ୍ୟକ୍ତିମାନଙ୍କ ପ୍ରଣତି ଗ୍ରହଣ କରୁଥିଲେ। ସେ ବେଶ୍ ଖୁସି ଜଣାଯାଉଥିଲେ। ଠିକ୍ ମଞ୍ଚ ପାଖରେ ପହଞ୍ଚିଲାବେଳକୁ ତାଙ୍କ ସହିତ ସାକ୍ଷାତ୍ ପାଇଁ ରାଜା ପରଦା ଆଢୁଆଳରୁ ବାହାରିଆସିଲେ। ତାଙ୍କ ସହିତ କାର୍ଡିନାଲ୍ ଥିଲେ ଓ ସେ ରାଜାଙ୍କୁ ନିମ୍ନସ୍ୱରରେ ଯେପରି କ'ଣ କହୁଥିଲେ। ତାହାପରେ ରାଜା ଓ ରାଣୀ ଉଭୟେ ମଞ୍ଚ ଉପରେ ବସିଲେ। ସେଠାରେ ସେମାନେ ନଗରୀର ଅଫିସରମାନଙ୍କଠାରୁ ଅଭିବାଦନ ଗ୍ରହଣ କରିବେ ଏବଂ ବିଭିନ୍ନ ପ୍ରଦେଶରୁ ଆଗତ ଜମିଦାରମାନଙ୍କୁ ମଧ୍ୟ ସେମାନଙ୍କ ସହିତ ପରିଚିତ କରାଇଦିଆଯିବ।

ନୃତ୍ୟ ଆରମ୍ଭ ପୂର୍ବରୁ ରାଜା ଓ ରାଣୀ ପାର୍ଶ୍ୱବର୍ତ୍ତୀ କୋଠରିକୁ ଯାଇ ସେମାନଙ୍କର ପୋଷାକ ପରିବର୍ତ୍ତନ କରିବାପାଇଁ ବ୍ୟବସ୍ଥା କରାଯାଇଥିଲା। ସେମାନେ ଠିକ୍ ଯିବା ସମୟରେ ରାଜା ହଠାତ୍ ରାଣୀଙ୍କ ଆଡ଼େ ବୁଲିପଡ଼ି ସେ କାହିଁକି ତାଙ୍କ ଜନ୍ମଦିନରେ ଦିଆଯାଇଥିବା ଉପହାରଟି ତାଙ୍କ କଥା ମୁତାବକ ପରିଧାନ କରିନଥିଲେ ବୋଲି ପଚାରିଲେ। ଚାପାକ୍ରୋଧବଶତଃ ଯେପରି ତାଙ୍କର କଣ୍ଠ ଥରିଉଠୁଥିଲା। ରାଣୀ ଉତ୍ତର କଲେ, ''ମହାରାଜ,

ଏଭଳି ଏକ ଜନଗହଳି ସ୍ଥାନରେ ଉକ୍ତ ହୀରକହାର ପ୍ରତି କୌଣସି ଦୁର୍ଘଟଣା ଘଟିବାର ସମ୍ଭାବନା ଭୟରେ ମୁଁ ତାହା ପରିଧାନ କରିନାହିଁ।''

''ନା ରାଣି, ତାହା ଭୁଲ ବୁଝାମଣା। ଏଭଳି ଉତ୍ସବ ଦିନମାନଙ୍କରେ ତୁମେ ତାହା ପରିଧାନ କରିବ ବୋଲି ମୁଁ ଦେଇଥିଲି।''

ରାଣୀ ଉତ୍ତରଦେଲେ, ''ମୁଁ ବର୍ତ୍ତମାନ ତାହା ଲୋଭର୍ ପ୍ରାସାଦରୁ ମଗାଇଆଣି ଆପଣଙ୍କର ଇଚ୍ଛାନୁଯାୟୀ ପରିଧାନ କରିବି।''

''ଏହା ଶୀଘ୍ର କର! ନୃତ୍ୟ ଠିକ୍ ଅଧଘଣ୍ଟାକ ପରେ ଆରମ୍ଭ ହେବ।'' ରାଣୀ ନିମ୍ନସ୍ୱରରେ ନିଜର ସମ୍ମତି ଜଣାଇ ସହଚରୀବୃନ୍ଦଙ୍କ ସହ ପୋଷାକ ପରିବର୍ତ୍ତନ କରିବା କୋଠରିକୁ ଚାଲିଗଲେ। ରାଜା ତାଙ୍କ କୋଠରିରେ ପୋଷାକ ପରିବର୍ତ୍ତନ କରୁଥିବା ସମୟରେ କାର୍ଡିନାଲ୍ ଉକ୍ତ ଗୃହରେ ପ୍ରବେଶକଲେ ଓ ତାଙ୍କୁ ଏକ କ୍ଷୁଦ୍ର ରୁପାବାକ୍ସ ବଢ଼ାଇଦେଲେ। ରାଜା ବାକ୍ସ ଖୋଲି ଦେଖିଲେ ଯେ, ତା ଭିତରେ ଦୁଇଟି ହୀରକଖଚିତ ପଦକ ରହିଛି। ଏ ଦୁଇଟି ପଦକ ସେ ରାଣୀଙ୍କୁ ଦେଇଥିବା ଉପହାର ପଦକ ପରି।

ରାଜା ପଚାରିଲେ, ''ଏହାର ଅର୍ଥ କଅଣ?'' କାର୍ଡିନାଲ୍ ଉତ୍ତରଦେଲେ, ''ସେ କିଛି ନୁହେଁ ମହାରାଜ! ଆପଣଙ୍କ ପ୍ରଦତ୍ତ ହୀରାମାଳାଟି ଯଦି ରାଣୀ ପରିଧାନ କରିଥାନ୍ତି, ମୋର ଟିକିଏ ସନ୍ଦେହ ହେଉଛି, ଆପଣ ସେଥିରେ ଥିବା ପଦକଗୁଡ଼ିକ ଗଣିନେବେ। ଆପଣ ଯଦି ସେଥିରେ ଦଶଟିମାତ୍ର ଦେଖନ୍ତି, ତାହାହେଲେ ଆଉ ଦୁଇଗୋଟି ପଦକ କ'ଣ ହେଲା ବୋଲି ରାଣୀଙ୍କୁ ପଚାରିବେ।''

ରାଜା ତାଙ୍କୁ ଏ ବିଷୟରେ ଆଉ କିଛି ପଚାରିବା ପୂର୍ବରୁ ପ୍ରଥମେ ନୃତ୍ୟପାଇଁ ବାଜା ବାଜିଉଠିଲା। ରାଜା ଓ ରାଣୀ ଉକ୍ତ ନୃତ୍ୟକୁ ଉଦ୍‌ଘାଟନେ କରିବାର କଥା। ସେମାନେ ମଞ୍ଚ ଉପରକୁ ଚାଲିଆସିଲେ। ରାଜା ଦେଖିଲେ ରାଣୀଙ୍କ ବାମ କାନ୍ଧର ପୋଷାକ ଉପରେ ହୀରକମାଳାଟି ଯେମିତି ଏକ ସୁଦୃଶ୍ୟ ଜଳପ୍ରପାତର ପ୍ରହେଳିକା ସୃଷ୍ଟି କରୁଛି। ତ୍ରୟୋଦଶ ଲୁଇ ଆନନ୍ଦରେ ବିଭୋର ହୋଇଗଲେ; କିନ୍ତୁ କାର୍ଡିନାଲ୍‌ଙ୍କର ବିରକ୍ତିକର ମନୋଭାବ ଆଉ ଲୁଚି ରହି ପାରିଲାନାହିଁ। ସେମାନଙ୍କ ମଧ୍ୟରୁ କେହି ହେଲେ ପଦକଗୁଡ଼ିକ ଗଣିବାପାଇଁ ସୁବିଧା ପାଇପାରିନଥିଲେ। ରାଣୀ ହୀରକମାଳାଟି ପରିଧାନ କରିଥିଲେ ସତ, ମାତ୍ର ସେଥିରେ ଦଶଟି ନା ବାରଟି ପଦକ ଥିଲା, କିଏ କହିବ?

ପ୍ରଥମ ନୃତ୍ୟ ପରେ ରାଜା ରାଣୀଙ୍କୁ ବିଶ୍ରାମ କକ୍ଷକୁ ନେଇଯାଇଥିଲେ।

ସେ କହିଲେ, ''ରାଣି, ତୁମକୁ ଧନ୍ୟବାଦ ଦେଉଛି। କାରଣ ମୋର ଇଚ୍ଛାପ୍ରତି ତୁମେ ସମ୍ମାନ ପ୍ରଦର୍ଶନ କରିଛ। ମୋର ମନେହୁଏ, ସେଥିରୁ ଦୁଇଗୋଟି ହୀରା ହଜିଯାଇଛି ଏବଂ ସେହି ହଜିଯାଇଥିବା ହୀରା ଦୁଇଟି ମୁଁ ନେଇ ଆସିଛି।'' ରାଣୀ ଆଶ୍ଚର୍ଯ୍ୟ ହେବାର ଛଳନା କରି ଚିତ୍କାର କରିଉଠିଲେ– ''ଏ କି କଥା ମହାରାଜ! ଆପଣ କ'ଣ ମୋତେ ଆଉ ଦୁଇଗୋଟି ହୀରା ଦେଉଛନ୍ତି! ତାହାହେଲେ ମୋର ଚଉଦଗୋଟି ହୀରା ହେବ।''

ରାଜା ରାଣୀଙ୍କ କାନ୍ଧ ଉପରୁ ଝୁଲୁଥିବା ପଦକଗୁଡ଼ିକ ବାରମ୍ବାର ଗଣିଲେ। ମାତ୍ର ସେଥିରେ ବାରଗୋଟି ପଦକ ଥିଲା। ରାଜା କାର୍ଡିନାଲ୍‌ଙ୍କୁ ସଙ୍ଗେ ସଙ୍ଗେ ପଚାରିଲେ, ''କାର୍ଡିନାଲ୍ ମହାଶୟ, ଏହାର ଅର୍ଥ କ'ଣ?'' କାର୍ଡିନାଲ୍ ତାଙ୍କର କ୍ରୋଧ ଦମନକରି ଶାନ୍ତ ଗଳାରେ ଉତ୍ତର ଦେଲେ, ''ଏହାର ଅର୍ଥ ହେଲା, ମୁଁ ମହାରାଣୀଙ୍କୁ ଆଉ ଦୁଇଗୋଟି ହୀରକ ଉପହାର ଦେବାପାଇଁ ଇଚ୍ଛାକରିଥିଲି; ମାତ୍ର ମୁଁ ନିଜେ ତାହା ଦେବାକୁ ସାହସ କରିପାରିଲି ନାହିଁ– ତେଣୁ ଏହି ପନ୍ଥା ଅବଲମ୍ବନ କରିଥିଲି।''

କାର୍ଡିନାଲ୍‌ଙ୍କ ମୁହଁକୁ ସିଧାସଳଖ ଚାହିଁ ରାଣୀ କହିଲେ, ''ମୁଁ ଆପଣଙ୍କଠାରେ ବିଶେଷ କୃତଜ୍ଞ।'' ତା'ପରେ ସେ ସାମାନ୍ୟ ହସି କହିଲେ, ''ରାଜା ଏ ସମସ୍ତ ହୀରକ ସଂଗ୍ରହ କରିବାକୁ ଯେତିକି ଖର୍ଚ୍ଚ କରିଥିବେ, ଆପଣ ଏହି ଦୁଇଟି ମାତ୍ର ପାଇବାକୁ ସେତିକି ଖର୍ଚ୍ଚ କରିଥିବେ।'' ଏହାପରେ ରାଣୀ ରାଜାଙ୍କୁ ତାଙ୍କର ଭକ୍ତି ଜ୍ଞାପନ କରି ତାଙ୍କ ପରିଚାରିକାମାନଙ୍କ ସହ ପରବର୍ତ୍ତୀ ନୃତ୍ୟ ପାଇଁ ପ୍ରସ୍ତୁତ ହେବାକୁ ବେଶ ପରିବର୍ତ୍ତନ କରିବା କକ୍ଷକୁ ଚାଲିଗଲେ।

ରାଣୀ ହଲ୍ ଛାଡ଼ିଛନ୍ତି କି ନାହିଁ, ପ୍ରଧାନ ଦ୍ୱାରଦେଶର ଅଭ୍ୟନ୍ତରରେ ପହରା ଦେଉଥିବା ଦାର୍‌ତାୟାଁ ତା'ର କହୁଣିକୁ କିଏ ସ୍ପର୍ଶ କରିବା ଜାଣିପାରିଲା। ସେ ବୁଲିପଡ଼ି ମାଡାମ୍ ବୋନାସିଏକ୍ସଙ୍କୁ ଦେଖିଲା। ତାଙ୍କ ପଛେ ପଛେ ଯିବାପାଇଁ ସେ ଦାର୍‌ତାୟାଁକୁ ସଙ୍କେତ ଦେଲେ। ସେ ତାକୁ ପାଖ ଦରଜାବାଟେ ନେଲେ ଏବଂ ସେମାନଙ୍କୁ କେତେକ ବାରଣ୍ଡା ଦେଇ ଖୁବ୍ ତରତରରେ ଯିବାକୁ ପଡ଼ିଥିଲା। କଡ଼କୁ ଥିବା ଗୋଟିଏ ଗଳିରାସ୍ତାର ମୁଣ୍ଡରେ ମାଡାମ୍ ବୋନାସିଏକ୍ସ ଦାର୍‌ତାୟାଁକୁ ନୀରବ ରହିବା ପାଇଁ ସଙ୍କେତ ଦେଲେ। ତା'ପରେ ଗୋଟିଏ ପାଖକୁ ଥିବା ଏକ ମୋଟା ପରଦା ଟେକି ସେ ଗୋଟିଏ ଦରଜାର ଚାବି ଖୋଲିଲେ ଓ ଦାର୍‌ତାୟାଁର ହାତ ଧରି ଅନ୍ଧକାର

କୋଠରି ଭିତରକୁ ଧୀରଭାବରେ ଟାଣିନେଇ କବାଟ ଭିତରପଟୁ ବନ୍ଦ କରିଦେଲେ। ଯାହା କିଛି ଘଟିଲେ ମଧ୍ୟ କୌଣସି ପ୍ରକାର ଶବ୍ଦ ନ କରିବା ପାଇଁ ସେ ଦାର୍‌ତାୟାଁର କାନରେ ଫୁସ୍‌ଫୁସ୍ କରି କହିଦେଲେ। ଏହାପରେ ମାତାମ୍ ବୋନାସିଏକ୍ସ ଗୋଟିଏ ରେଶମ ପରଦା ପଛପଟେ ଥିବା ଗୋଟିଏ ଦରଜାର ଚାବି ଖୋଲିଲେ ଓ ଦରଜାଟିକୁ ଖୋଲା ରଖି ଭିତରକୁ ଚାଲିଗଲେ। ଅନ୍ୟ ପଟରେ ଥିବା କୋଠରିଟି ଅତି ଉଜ୍ଜ୍ୱଳ ଭାବରେ ଆଲୋକିତ ହୋଇଥିଲା। ଉକ୍ତ କୋଠରିରେ କେତେକ ରମଣୀ କଥାବାର୍ତ୍ତା ହେବା ଓ ହସିବାର ଶବ୍ଦ ଦାର୍‌ତାୟାଁ ଶୁଣିପାରୁଥିଲା। ସେମାନଙ୍କର କଥୋପକଥନରୁ ଏବଂ ସେମାନେ 'ଶ୍ରୀହଜୁର' କହୁଥିବା ସ୍ୱରରୁ ସେ ଜାଣିପାରିଲା ଯେ, ପାଖ ବଖରାଟି ରାଣୀଙ୍କର ପୋଷାକ ବଦଳାଇବା କକ୍ଷ। ଦାର୍‌ତାୟାଁ କୋଠରିର ଅର୍ଦ୍ଧ-ଅନ୍ଧକାର ମଧ୍ୟରେ ଠିଆହୋଇ ରହି ଏହା ପରେ କଅଣ ଘଟିବ ଭାବି ବିସ୍ମିତ ହେଉଥାଏ।

ରାଣୀ ସେଦିନ ବେଶ୍ ଖୁସି ମନରେ ଥିବା ଦେଖି ଯେଉଁ ସହଚରୀମାନେ ତାଙ୍କୁ ସର୍ବଦା ବିମର୍ଷ ତଥା ଦୁଃଖିତ ଦେଖିଆସିଥିଲେ, ସେମାନେ ଆଶ୍ଚର୍ଯ୍ୟ ହେଉଥାନ୍ତି। ଖୋଲା ଦରଜା ପାଖକୁ ରାଣୀ ଦୁଇବାର ଆସିଥିବା ଦାର୍‌ତାୟାଁ ଲକ୍ଷ୍ୟ କରିଥିଲା। ତା'ପରେ ତାଙ୍କର ଛାୟା ପରଦା ଉପରେ ପଡ଼ିଲା ଓ ଠିକ୍ ସେହି ମୁହୂର୍ତ୍ତରେ ଗୋଟିଏ ସୁନ୍ଦର କୋମଳ ହାତ ପରଦା ବାହାରକୁ ଚାଲିଆସିଲା। ଦାର୍‌ତାୟାଁ ସଙ୍ଗେ ସଙ୍ଗେ ବୁଝିପାରିଲା ଯେ, ଏହା ତା'ର ପୁରସ୍କାର। ସେ ଅବନତ ହୋଇ ରାଣୀଙ୍କର ସେ ପ୍ରସାରିତ ହସ୍ତ ଧାରଣ କଲା ଏବଂ ତାହାକୁ ନିଜ ଅଧରଦ୍ୱାରା ସ୍ପର୍ଶକଲା। ତା'ପରେ ହାତଟି ଭିତରକୁ ଚାଲିଗଲା; କିନ୍ତୁ ଦାର୍‌ତାୟାଁର ହାତରେ ରହିଗଲା ଗୋଟିଏ ହୀରକ ମୁଦ୍ରିକା। ଦାର୍‌ତାୟାଁ ମୁଦିଟି ପିନ୍ଧି ନେଇ ପରଦାକୁ ଲକ୍ଷ୍ୟ ରଖି ଅପେକ୍ଷା କଲା। ଅଳ୍ପ ସମୟ ପରେ ରାଣୀ ତାଙ୍କ ପରିଚାରିକାମାନଙ୍କୁ ନେଇ କୋଠରିରୁ ଚାଲିଯିବା ସେ ଜାଣିପାରିଲା। ହଲ୍‌ରେ ପୁଣି ଥରେ ନୃତ୍ୟ ଆରମ୍ଭ ହୋଇଯାଇଥିଲା। ତା'ପରେ ମାତାମ୍ ବୋନାସିଏକ୍ସ ନୀରବରେ ଗୃହ ମଧ୍ୟକୁ ପ୍ରବେଶ କଲେ ଏବଂ ଗଳି ଆଡ଼କୁ ଥିବା ଦରଜାକୁ ଖୋଲିଦେଲେ। ସେ ଫୁସ୍ ଫୁସ୍ କରି କହିଲେ, ''ପଦେ କଥା କହ ନାହିଁ ବା ସାମାନ୍ୟ ଶବ୍ଦ କର ନାହିଁ। ଯେଉଁ ବାଟଦେଇ ଆସିଥିଲ, ସେହି ବାଟେ ଫେରିଚାଲ।''

# ଭୟ ପ୍ରଦର୍ଶନ ଓ ପ୍ରତିଜ୍ଞା

ତହିଁଆରଦିନ ପ୍ରଭାତରେ ନିର୍ଦ୍ଧାରିତ ବ୍ୟବସ୍ଥା ଅନୁଯାୟୀ ଚାରିବନ୍ଧୁ ପାର୍‌କୋନ୍‌ଠାରେ ପ୍ରାତଃଭୋଜନ ପାଇଁ ମିଳିତ ହୋଇଥିଲେ। ଗୋଟିଏ ସ୍ୱତନ୍ତ୍ର କୋଠରିରେ ମନଖୁସିରେ ନିଜ ନିଜର ଦୁଃସାହସିକ କାର୍ଯ୍ୟମାନ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ବକିଙ୍ଗ୍‌ହାମ୍ ଡ୍ୟୁକ୍ ଦେଇଥିବା ଅଶ୍ୱମାନଙ୍କର ବିଶେଷ ପ୍ରଶଂସା କରୁଥିଲେ। ପରେ ପରେ ଗୋଟିଏ ହୀରକ ମୁଦ୍ରିକା ପରସ୍ପର ମଧ୍ୟରେ ଦେଣନେଣ ହେବାର ଦେଖାଗଲା। ଏହାକୁ ମଧ୍ୟ ବିଶେଷ ସମ୍ମାନ ଦିଆଯାଉଥିଲା। ସେମାନେ ସେଠାରୁ ଚାଲିଯିବାକୁ ବସିଛନ୍ତି, ପ୍ଲାଞ୍ଚେଟ୍ ଗୋଟିଏ ବଡ଼ ଲଫାଫା ଧରି ସେଠାରେ ପ୍ରବେଶ କଲା। [illegible] ଲଫାଫା ଉପରେ ଥିବା ଲାଲ ମୋହରରୁ ପତ୍ରଟି କେଉଁଠାରୁ ଆସିଥିଲା ଜାଣିବାରେ ଆଉ ସନ୍ଦେହ ରହିଲା ନାହିଁ। ମୁହୂର୍ତ୍ତେ ଦି' ମୁହୂର୍ତ୍ତ ପାଇଁ ଚାରିବନ୍ଧୁ ପରସ୍ପରକୁ ନୀରବରେ ଚାହିଁରହିଲେ। ଦାର୍‌ତାୟାଁ ଲଫାଫାଟି ଖୋଲୁ ଖୋଲୁ କହିଲା, ''ଆଚ୍ଛା, ଏମିନେନ୍‌ସ ଏଥିରେ କ'ଣ ଲେଖିଛନ୍ତି, ଦେଖିବା।''

ଲଫାଫା ଭିତରେ କୌଣସି ପତ୍ର ନ ଥିଲା, ମାତ୍ର ସୁନେଲି ଧାରଯୁକ୍ତ ଖଣ୍ଡିଏ କାର୍ଡ଼ ଥିଲା ଓ ସେଥିରେ ନିମ୍ନଲିଖିତ ପ୍ରକାରେ ଲେଖାଯାଇଥିଲା :

''ଏମ୍. ଡେସ୍. ଏସାର୍ଟସଙ୍କ ଅଧିନାୟକତ୍ୱରେ ପରିଚାଳିତ ରାଜାଙ୍କ ରକ୍ଷୀଦଳର ଏମ୍. ଦାର୍‌ତାୟାଁକୁ ଏମିନେନ୍‌ସ କାର୍ଡିନାଲ୍ ରିଚିଲିଉ ଆଜି ସନ୍ଧ୍ୟା ଆଠ ଘଣ୍ଟା ସମୟରେ ସାକ୍ଷାତ୍ କରିବା ପାଇଁ (ତାଙ୍କ ପ୍ରାସାଦରେ) ଆଶା କରନ୍ତି।

ଲା. ହୋଡ଼ିନିଏରୀ

ପ୍ରାସାଦରକ୍ଷୀଙ୍କର କ୍ୟାପ୍‌ଟେନ୍''

ପୋର୍ଥସ୍ କହିଲେ, ''ମୁଁ ଭାବୁନାହିଁ ଯେ, କାର୍ଡିନାଲ୍ ତୁମକୁ ରାତ୍ରଭୋଜନକୁ ନିମନ୍ତ୍ରଣ କରିଛନ୍ତି।'' ଆରାମିସ୍ କହିଲେ, ''ମୋର ମନେହୁଏ, ସେ ଏହାଙ୍କୁ ବାଷ୍ଟାଇଲ୍ ଦୁର୍ଗକୁ ନିମନ୍ତ୍ରଣ କରିଛନ୍ତି।'' ଦାର୍‌ତାୟାଁ କହିଲା – ''ମୁଁ ସେଥିପାଇଁ ଆଦୌ ଚିନ୍ତା କରୁନାହିଁ। ମୁଁ ନିଶ୍ଚିତଭାବେ ଜାଣେ, ଆପଣ ମୋତେ ସେଠାରୁ ଯଥାଶୀଘ୍ର ମୁକ୍ତ କରିପାରିବେ।

ଆଥସ୍ ଶାନ୍ତଭାବରେ କହିଲେ, ''ଆମେ ସର୍ବାଦୌ ତାଙ୍କୁ ସେଠାକୁ ଯିବାପାଇଁ ଦେବାନାହିଁ। ପ୍ରାସାଦ ଭିତରକୁ ତିନିଗୋଟି ଫାଟକ ଅଛି; ନୁହେଁ

କି ? ପ୍ରତ୍ୟେକ ଫାଟକ ପାଖରେ ଆମେ ତିନିଜଣ ପ୍ରତ୍ୟେକେ ତିନି ବା ଚାରି ଜଣ କରି ମସ୍‌କେଟିଅର୍‌ଙ୍କ ସହିତ ଅପେକ୍ଷା କରିବା ଏବଂ ଦାର୍‌ତାୟାଁ ଭିତରେ ଥିବା ପର୍ଯ୍ୟନ୍ତ ଲକ୍ଷ୍ୟ ରଖିବା । ତା'ଛଡ଼ା ଯେତେଗୁଡ଼ିଏ ବନ୍ଦ ହୋଇଥିବା ଘୋଡ଼ାଗାଡ଼ି ପ୍ରାସାଦ ମଧ୍ୟରୁ ବାହାରକୁ ଯିବ, ସେଗୁଡ଼ିକୁ ଅଟକାଇ ତନଖି କରିବା । ଯଦି ଏମିନେନ୍‌ସଙ୍କ ରକ୍ଷୀମାନେ ବାଧା ଦିଅନ୍ତି, ତାହାହେଲେ ଅଳ୍ପଦିନ ପୂର୍ବେ ସେମାନେ ଆମମାନଙ୍କୁ ଯେପରି ଭାବରେ ବିରକ୍ତ କରିଥିଲେ, ତାହାର ପ୍ରତିଶୋଧ ନେବାପାଇଁ ଆମେ ସୁଯୋଗ ପାଇବା । ଆପଣମାନେ ଏ ବିଷୟରେ କ'ଣ ଭାବୁଛନ୍ତି ?'' ଅନ୍ୟମାନେ ସମସ୍ତେ ଏକସ୍ୱରରେ କହିଉଠିଲେ, ''ଏକଦମ୍ ଠିକ୍ !''

ଏକଥା ମଧ୍ୟ ସେଠାରେ ସ୍ଥିର ହେଲା ଯେ, ସେମାନେ ପ୍ରତ୍ୟେକେ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ସେଠାକୁ ଘୋଡ଼ାରେ ବସି ଯିବେ । ଏହି ବ୍ୟବସ୍ଥାଫଳରେ ସେମାନେ ସେମାନଙ୍କ ସହିତ ପିସ୍ତଲ ନେଇପାରିବେ ଏବଂ ଦରକାର ପଡ଼ିଲେ ଯଦି ଦୈବାତ୍ କୌଣସି ଘୋଡ଼ାଗାଡ଼ି ସେଠାରେ ବନ୍ଦ ହେବାକୁ ବାରଣ କରେ, ତାହାହେଲେ ତାକୁ ଅନୁଧାବନ କରିପାରିବେ । ପୋର୍ଥସ୍‌ଙ୍କର ସେ ଦିନଯାକ କିଛି କାମ ନ ଥିଲା; ତେଣୁ ସେ ଏକ ଡଜନ ବା ସେମିତି କିଛି ସଂଖ୍ୟକ ମସ୍‌କେଟିଅର୍ ସଂଗ୍ରହ କରିବା ଦାୟିତ୍ୱ ନେଲେ ଏବଂ ପ୍ରାସାଦ ଛକରେ ସେଦିନ ସଂଧ୍ୟା ସାଢ଼େ-ସାତ ଘଣ୍ଟା ସମୟରେ ବନ୍ଧୁମାନଙ୍କୁ ଦେଖାକରିବା ପାଇଁ ମଧ୍ୟ କଥା ଦେଲେ । ଏହିପରି ବିଚାର ପରାମର୍ଶ କରି ଚାରିବନ୍ଧୁ ଭଗ୍ନ ହୋଟେଲ ଛାଡ଼ିଲେ ।

ସାତଟା ବାଜିବାର ଅଳ୍ପ ସମୟ ପରେ ଆଥସ୍, ଆରାମିସ୍ ଓ ଦାର୍‌ତାୟାଁ ଲୋଭର୍ ପ୍ରାସାଦକୁ ଯିବାପଥରେ ଏମ୍. ଡି. ଟ୍ରିଭିଲ୍‌ଙ୍କ ସହ ସାକ୍ଷାତ୍ କଲେ । ଦାର୍‌ତାୟାଁ କାର୍ଡିନାଲ୍‌ଙ୍କ ଆଦେଶପତ୍ର କଥା ତାଙ୍କୁ କହିଲା; ତା'ଛଡ଼ା ସେମାନେ ଯେଉଁ ପ୍ରକାର ବ୍ୟବସ୍ଥା କରିଛନ୍ତି ସେକଥା ମଧ୍ୟ ଜଣାଇଦେଲା । ଏମ୍. ଡି. ଟ୍ରିଭିଲ୍ ସେମାନଙ୍କର ଯୋଜନାକୁ ପୂର୍ଣ୍ଣ ସମର୍ଥନ ଜଣାଇଲେ । ସେ ମଧ୍ୟ ସେମାନଙ୍କୁ ଦୃଢ଼ ଭାବରେ କଥା ଦେଲେ ଯେ, ଯଦି ଦାର୍‌ତାୟାଁ ବିପଦରେ ପଡ଼େ, ସେ ନିଜେ ସାହାଯ୍ୟ କରିବାକୁ ଯିବେ ।

ସେମାନେ ପ୍ରାସାଦଛକର ଗୋଟିଏ କୋଣରେ ପୋର୍ଥସ୍, ବାର ଜଣ ମସ୍‌କେଟିଅର୍ ତଥା ସେମାନଙ୍କର ଭୃତ୍ୟମାନଙ୍କୁ ବେଶ୍ ପ୍ରସ୍ତୁତ ହୋଇ ଘୋଡ଼ାସହ ସେଠାରେ ଅପେକ୍ଷା କରିଥିବାର ଦେଖିଲେ । ପୂର୍ବର ବ୍ୟବସ୍ଥାନୁଯାୟୀ ଆଥସ୍, ପୋର୍ଥସ୍ ଓ ଆରାମିସ୍ ପ୍ରତ୍ୟେକେ ଚାରିଜଣ ମସ୍‌କେଟିଅର୍

ଓ ସେମାନଙ୍କର ଭୃତ୍ୟଙ୍କୁ ନେଇ ପ୍ରାସାଦର ତିନିଗୋଟି ଫାଟକ ଜଗିରହିଲେ। ଦାର୍‌ତାୟାଁ ଓ ପ୍ଲାଞ୍ଚେଟ୍ ପ୍ରଧାନ ଫାଟକବାଟେ ପ୍ରାସାଦ ପ୍ରାଙ୍ଗଣକୁ ଚାଲିଲେ। ପ୍ରଧାନ ଫାଟକ ପାଖରେ ଘୋଡ଼ାରୁ ଓହ୍ଲାଇପଡ଼ି ଓ ଘୋଡ଼ାକୁ ପ୍ଲାଞ୍ଚେଟ୍ ଜିମା ଦେଇ ଦାର୍‌ତାୟାଁ ଏକା ପ୍ରାସାଦ ଭିତରକୁ ପଶିଲା। ଜଣେ ଭୃତ୍ୟ ଦାର୍‌ତାୟାଁଙ୍କୁ କେତେକ କୋଠରି ଓ ଶେଷରେ ଲାଲପରଦା ଝୁଲୁଥିବା ଏକ ବାରଣ୍ଡା ଦେଇ ବାଟ କଢ଼ାଇନେଲା। ଲାଇବ୍ରେରୀଠାରେ ଉକ୍ତ ଲୋକଜଣକ ଧୀରେ ଧୀରେ ଦରଜାରେ ହାତ ମାରିଲା ଓ ତା'ପରେ କେତେକ ମୁହୂର୍ତ୍ତ ପାଇଁ ଅପେକ୍ଷା କରି ରହିଲା। ଦାର୍‌ତାୟାଁ ତା'ର ଜୀବନରେ ପ୍ରଥମ ଥର ପାଇଁ ଏମିନେନ୍‌ସ କାର୍ଡିନାଲ୍ ରିଚ୍‌ଲିଉଙ୍କ ସମ୍ମୁଖରେ ବର୍ତ୍ତମାନ ଦଣ୍ଡାୟମାନ। କାର୍ଡିନାଲ୍ କେତେକ ମୁହୂର୍ତ୍ତପାଇଁ ତାଙ୍କ ଡେସ୍କପାଖରେ ନୀରବରେ ବସିରହି ତନ୍ନତନ୍ନ କରି ଦାର୍‌ତାୟାଁଙ୍କୁ ଚାହିଁଲେ ମଧ୍ୟ ତାର କୌଣସି ପ୍ରକାର ଅସ୍ୱସ୍ତିକର ଅବସ୍ଥା ଲକ୍ଷ୍ୟ କରିପାରିଲେ ନାହିଁ। ସେ ବେଶ୍ ଶାନ୍ତ ଜଣାପଡୁଥିଲା। ନୀରବତା ଭଙ୍ଗକରି କାର୍ଡିନାଲ୍ ପଚାରିଲେ, ''ତୁମେ କ'ଣ ଗାସ୍‌କନିର ଯୁବକ ସେହି ଦାର୍‌ତାୟାଁ ?''

ଦାର୍‌ତାୟାଁ ଉତ୍ତର ଦେଲା, ''ହଁ ହଜୁର !''

କାର୍ଡିନାଲ୍ କହିଲେ, ''ଅନେକ ପରିବାର ତୁମ ନାମରେ ଅଛନ୍ତି। ତୁମେ କେଉଁ ପରିବାରର ?''

''ବର୍ତ୍ତମାନର ରାଜାଙ୍କର ପିତା ରାଜା ହେନେରୀଙ୍କ ଅଧୀନରେ ମୋର ପିତା ଚାକିରି କରିଥିଲେ।''

''ବେଶ୍, ମୋର ମନେହୁଏ ତୁମେ ସାତ ଆଠ ମାସ ତଳେ ତୁମର ଭାଗ୍ୟାନ୍ୱେଷଣରେ ତୁମ ଘର ଛାଡ଼ି ପ୍ୟାରସ୍ ଆସିଥିଲ, ନୁହେଁ କି ?''

''ହଁ ହଜୁର !''

''ମୋର ମନେହୁଏ, ମିଅଙ୍ଗଠାରେ ତୁମର ସାମାନ୍ୟ ଭାଗ୍ୟ-ବିପର୍ଯ୍ୟୟ ଘଟିଥିଲା।''

''ହଁ ହଜୁର, ସେମିତି କିଛି ଘଟିଥିଲା।''

କ'ଣ ଘଟିଥିଲା ଜାଣିଲା ପରି ସାମାନ୍ୟ ହସି କାର୍ଡିନାଲ୍ କହିଲେ, ''ସେ ସବୁ ବିଷୟରେ ଚିକିନିଖି ବିବରଣୀ ଦେବା ଦରକାର ନାହିଁ। ତୁମର ପିତା ଏମ୍. ଡି. ଟ୍ରିଭିଲ୍‌ଙ୍କ ପାଖକୁ ଖଣ୍ଡିଏ ପରିଚୟପତ୍ର ଦେଇଥିଲେ; ନୁହେଁ କି ?''

''ହଁ ପ୍ରଭୁ ! କିନ୍ତୁ ମିଅଙ୍ଗଠାରେ – ''

କାର୍ଡିନାଲ୍ ପୁଣି କହିଲେ, ''ତୁମେ ପତ୍ରଖଣ୍ଡିକ ହଜାଇଦେଲ। ହଁ, ହଁ, ମୁଁ ତାହା ଜାଣେ। ତା ସତ୍ତ୍ୱେ ଏମ୍. ଡି. ଟ୍ରେଭିଲ୍ ତାଙ୍କ ଶାଳକ ଏସାର୍ଟସଙ୍କ ଅଧୀନରେ ତୁମକୁ ଜଣେ ରକ୍ଷୀଭାବରେ ନିଯୁକ୍ତି ଦେଲେ; ଆଉ ତୁମକୁ ଆଶା ଦିଆଗଲା ଯେ, ଦିନେ ତୁମକୁ ଜଣେ ମସ୍‌କେଟିଅର୍ କରାଯିବ।''

''ହଜୁର, ଠିକ୍ କହିଛନ୍ତି।''

''ଗତ କେତେ ମାସ ହେଲା ତୁମେ ପ୍ୟାରିସ୍‌ରେ ଅଛ, ଆଉ ତୁମକୁ ନେଇ ନାନା କଥା ଘଟିଗଲାଣି। ଏହି ଦିନେ ଦୁଇଦିନ ପୂର୍ବେ ତୁମେ ଓ ତୁମର ବନ୍ଧୁମାନେ ଫୋର୍ଜେସ୍ ସାଗର ଅତିକ୍ରମ କରିବାପାଇଁ ଯାଇଥିଲ। ବହୁ କାରଣଯୋଗେ ସେମାନେ ସବୁ ବାଟରେ ରହିଗଲେ; ମାତ୍ର ତୁମେ ଚାଲିଲ। ଏ ତ ଅତି ସହଜ କଥା! ଇଂଲଣ୍ଡର ଜଣେ ବିଶିଷ୍ଟ ବ୍ୟକ୍ତିଙ୍କୁ ସାକ୍ଷାତ୍ କରିବାପାଇଁ ତୁମେ ଯାଇଥିଲ।''

''ହଜୁର ଯାହା କହୁଛନ୍ତି, ମୁଁ...''

କାର୍ଡିନାଲ୍ ମଝିରେ କହିଲେ, ''ତୁମେ କହିବା ଦରକାର ନାହିଁ। ଏସବୁ ବିଷୟ ଜାଣିବା ହେଉଛି ମୋ କାମ। ତୁମେ ସେଠାକୁ ଯାଇ ସଫଳକାମ ହୋଇଛ ଏବଂ ସେଠାରୁ ଫେରିବା ପରେ ଜଣେ ବିଶିଷ୍ଟ ବ୍ୟକ୍ତି ତୁମକୁ ସମ୍ମାନିତ କରିଛନ୍ତି। ଆଉ ମୁଁ ଦେଖି ଭାରି ଖୁସି ଯେ ତୁମକୁ ଯେଉଁ ଉପହାର ମିଳିଛି, ତାହା ତୁମେ ତୁମ ହାତରେ ପିନ୍ଧିଛ। ଅନ୍ୟ କିଏ ହୁଏତ ଏହାକୁ ସଙ୍ଗେ ସଙ୍ଗେ ବିକ୍ରୟ କରିଦେଇଥାନ୍ତା।''

ଦାର୍ତାୟାଁର ଖିଆଲ ଆସିଲା ଯେ, ସେ ସେଇ ମୁଦିଟି ପରିଧାନ କରିଛି ଏବଂ ଏବେ ଉକ୍ତ ହୀରାଖଣ୍ଡଟି ଭିତରକୁ ବୁଲାଇ ଦେଇ ଲୁଚାଇଦେବା ତା ପକ୍ଷରେ ଆଉ ସମ୍ଭବ ନୁହେଁ। କାର୍ଡିନାଲ୍ ଜାଣିଲାପରି ହସି ହସି କହିଲେ, ''ଏହି ଅଳ୍ପ ସମୟ ପୂର୍ବେ ତୁମେ ତୁମର ସମୟ କିପରି କଟାଇଛ, ସେସବୁ ବିଷୟ ତୁମକୁ କହି ମୁଁ ଆଉ ସମୟ ନଷ୍ଟ କରିବି ନାହିଁ। ମୋର ବିଶ୍ୱାସ, ତୁମେ ଏପର୍ଯ୍ୟନ୍ତ ଏପରି ମୁକ୍ତ ଥିବାଯୋଗେ ମୋତେ ନିଶ୍ଚୟ ଧନ୍ୟବାଦ ଦେବ।''

କାର୍ଡିନାଲ୍‌ଙ୍କର ଏ ପ୍ରକାର ଉକ୍ତିରେ ଯେ କି ଅର୍ଥ ନିହିତ ଅଛି, ତାହା ଅନୁମାନ କରି ଦାର୍ତାୟାଁ ମନେ ମନେ ଥରିବାକୁ ଲାଗିଲା। କାର୍ଡିନାଲ୍ କହିଚାଲିଲେ, ''ମୁଁ ଆଜି ସୁଦ୍ଧା ତୁମକୁ ବେଶ୍ ସମ୍ଭାଳିଛି; ତାହାର କାରଣ ହେଲା ତୁମର ଭବିଷ୍ୟତ ପାଇଁ ମୁଁ ଗୋଟିଏ ବିଷୟ ସ୍ଥିର କରିଛି।''

ଏକଥା ଶୁଣି ଦାର୍‌ତାୟାଁ ମୁହଁରୁ ଭୟରେ କଥା ବାହାରିଲା ନାହିଁ। ରିଚିଲିଉ ପାଖରେ ଥିବା ଚୌକି ପ୍ରତି ଅଙ୍ଗୁଳ ନିର୍ଦ୍ଦେଶ କରି ଦାର୍‌ତାୟାଁଙ୍କୁ କହିଲେ, ''ସେଠି ମୋ ସାମନାରେ ବସ, ଆଉ ମୁଁ ତୁମକୁ କଥାଟା ବୁଝାଇଦିଏ।'' କାର୍ଡିନାଲ୍ ତାଙ୍କ ଡାହାଣ କହୁଣି ଡେକ୍‌ସ ଉପରେ ଭରାଦେଇ ଓ ଗାଲରେ ହାତ ଦେଇ କହିଲେ, ''ତୁମେ ଜଣେ ଅତି ସାହସୀ ଯୁବକ, ତା' ଛଡ଼ା ତୁମର ବୁଦ୍ଧି ଅଛି। ଏସବୁ ସତ୍ତ୍ୱେ ତୁମେ ପିଲାଲୋକ ଓ ସଂସାରରେ ନୂଆକରି ପ୍ରବେଶ କରୁଛ। ଏକଥା ଜାଣିରଖ ଯେ, ଶତ୍ରୁ ଅତି ସହଜରେ ସୃଷ୍ଟି ହୋଇଯାନ୍ତି ଓ ସେମାନଙ୍କ ସ୍ୱାର୍ଥରେ ସାମାନ୍ୟ ଆଞ୍ଚ ଆସିଲେ ତୁମର ସର୍ବନାଶ ଘଟାଇବାକୁ ସେମାନେ ପଛାଇବେ ନାହିଁ।''

ସେ ଟିକିଏ ରହିଗଲେ – ହୁଏତ ତାଙ୍କ କଥାଟା କେତେଦୂର କାଟୁକରୁଛି ଦେଖିବାପାଇଁ। ଦାର୍‌ତାୟାଁ ବର୍ତ୍ତମାନ ରୋକ୍‌ଠୋକ୍ କହିଦେଲା, ''ହଜୁର, ମୁଁ ବା କଣ କରିପାରେ ? ମୋର କି ପ୍ରକାର ଅନୁଭୂତି ବା ଅଛି ?''

''ତୁମର ବିଶେଷ ଅନୁଭୂତି ନଥିଲେ ମଧ ତୁମେ ଯଥେଷ୍ଟ କରିପାରିଛ। ମୋର ମନେହୁଏ, ତୁମେ ଟିକିଏ ନିୟନ୍ତ୍ରଣ ଓ ତାଲିମ ଦରକାର କରୁଛ – ମୁଁ ବୋଧହୁଏ ଭୁଲ କହୁନାହିଁ। ତୁମେ କିନ୍ତୁ ଭବିଷ୍ୟତ ଆଶାରେ ପ୍ୟାରିସ ଆସିଥିଲ।''

''ହଜୁର, ମୁଁ କେବଳ ସୁନେଲି ସ୍ୱପ୍ନ ଦେଖିବା ବୟସରେ ପହଞ୍ଚିଛି।''

''ସୁନେଲି ସ୍ୱପ୍ନ ବୋଲି କିଛି ନାହିଁ, ସେସବୁ ନିର୍ବୋଧଙ୍କ ଭାବନା। ତୁମେ ଜଣେ ଜାଣିବା-ବୁଝିବା ଯୁବକ। ମୁଁ ଯଦି ମୋର ରକ୍ଷୀ ପଦବୀକୁ ତୁମକୁ ଉତ୍ତୀର୍ଣ୍ଣ କରେ, ତା'ପରେ ଗୋଟିଏ ରକ୍ଷୀଦଳର ସେନାପତି ପଦରେ ପ୍ରତିଷ୍ଠିତ କରେ – ଅବଶ୍ୟ ରୋଚେଲି ଯୁଦ୍ଧ ପରେ ଶେଷୋକ୍ତ ବିଷୟ ମୁଁ ନିଶ୍ଚୟ କରିବି – ତେବେ ତୁମେ ଏହାକୁ କିପରି ଗ୍ରହଣ କରିବ ?''

''ହଜୁର !''

''ତୁମେ ଏହା ଗ୍ରହଣ କରୁଛ – ନୁହେଁ କି ?''

ଦାର୍‌ତାୟାଁ ବିଶେଷ ବ୍ୟସ୍ତ ହୋଇପଡ଼ିଲା ଓ କହିଲା, ''ହଜୁର !'' କାର୍ଡିନାଲ୍ ଆଶ୍ଚର୍ଯ୍ୟ ହୋଇଯାଇ କହିଲେ, ''କଣ ? ତୁମେ ମନାକରୁଛ ?''

''ମୁଁ ରାଜାଙ୍କ ରକ୍ଷୀଦଳରେ ଅଛି ହଜୁର। ଆଉ ମୋର ଅସନ୍ତୁଷ୍ଟ ହେବାପାଇଁ କାରଣ କିଛି ନାହିଁ।''

''ଆଚ୍ଛା, ମୋର ରକ୍ଷୀମାନେ କଣ ମୋ ନିଜର – ରାଜାଙ୍କ ଚାକିରିରେ କ'ଣ ନାହାନ୍ତି ?''

''ହଜୁର, ମୋ କଥା ଭୁଲବୁଝିଲେ।''

''ଓହୋ ! କେମିତି, କି କାରଣ ଦର୍ଶାଇ ତୁମେ ଏହାକୁ ଗ୍ରହଣ କରିବ, ବୋଧହୁଏ ସେହି କଥା ଭାବୁଛ ! ମୁଁ ବୁଝିଛି। ଆଚ୍ଛା, ତୁମେ ତ ସମସ୍ତଙ୍କୁ କହିପାରିବ ଯେ, ଉକ୍ତ ଚାକିରିରେ ଖୁବ୍ ଶୀଘ୍ର ପଦୋନ୍ନତି ହେବାର ଅଛି; ତା'ଛଡ଼ା ରୋଟେଲି ଯୁଦ୍ଧ ପରେ ଆଉ ଅଧିକ ପଦୋନ୍ନତି ବି ରହିଛି। ଆଉ ତୁମେ ତୁମ ନିଜର ନିରାପତ୍ତା ନିଶ୍ଚୟ ଆବଶ୍ୟକ କର। ମୋର ମଧ୍ୟ ତୁମକୁ କହିଦେବା ଉଚିତ ହେବ ଯେ ତୁମ ବିରୁଦ୍ଧରେ ନାନା ଅଭିଯୋଗ, ଗୁରୁତର ଅଭିଯୋଗମାନ ଆସି ପହଞ୍ଚୁଛି। ସେଥିରୁ ଜଣାଯାଉଛି ଯେ, ତୁମେ ରାଜକାର୍ଯ୍ୟରେ ନିଯୁକ୍ତ ଥାଇ ମଧ୍ୟ ତୁମର ଉଚିତ କାର୍ଯ୍ୟ ସମାପନ କରୁନାହଁ। ଆଚ୍ଛା, ବର୍ତ୍ତମାନ ଆଉ ଥରେ ଚିନ୍ତା କର। ତଥାପି ତୁମେ କଣ ମୋର ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରୁଛ ?''

''ମୁଁ ମହାନ୍ ଧନ୍ଦାରେ ପଡ଼ିଗଲି ହଜୁର। ମୋତେ ଯଦି ଖୋଲାଖୋଲି କହିବାକୁ ଦିଆଯାଏ, ତେବେ ମୁଁ—'' ରିଚିଲିଉ ସଙ୍ଗେ ସଙ୍ଗେ କହିଲେ, ''ଅବଶ୍ୟ, ଅବଶ୍ୟ।''

''ତାହାହେଲେ ମୁଁ କହିବି ହଜୁର, ମୁଁ କୌଣସି କଥା ଲୁଚାଇବି ନାହିଁ। ମୋର ସମସ୍ତ ବନ୍ଧୁ ରାଜାଙ୍କ ମସ୍‌କେଟିଅର୍‌ଦଳର ଅନ୍ତର୍ଗତ; ଆଉ ମୋର ଦୁର୍ଭାଗ୍ୟ ଯେ, ମୋର ଶତ୍ରୁମାନେ ହଜୁରଙ୍କ ରକ୍ଷୀଦଳରେ ରହୁଛନ୍ତି। ତେଣୁ ଏକଥା ସତ ଯେ, ଏଠାରେ ମୋତେ କେହି ସ୍ୱାଗତ କରିବେ ନାହିଁ। ଏହିପରି ମୁଁ ଏ କୂଳର ବା ସେ କୂଳର ହେବି ନାହିଁ।'' ରିଚିଲିଉ ସଙ୍ଗେ ସଙ୍ଗେ ପଚାରିଲେ, ''ଆଚ୍ଛା, ତୁମ ମନରେ କଣ ଏମିତି ଧାରଣା ଆସୁଛି ଯେ, ମୋର ପ୍ରସ୍ତାବ ତୁମର ଭଲ ପାଇଁ ନୁହେଁ ?''

''ମୁଁ ବରଂ ଭାବୁଛି ପ୍ରଭୁ, ମୁଁ ହଜୁରଙ୍କ କରୁଣା ପାଇବାକୁ ନିଜକୁ ସଂପୂର୍ଣ୍ଣ ଅଯୋଗ୍ୟ ମନେକରୁଛି। ଅଳ୍ପ ଦିନ ପରେ ମୁଁ ହୁଏତ ରୋଟେଲିଠାରେ ଯୁଦ୍ଧରେ ଯୋଗଦେଇଥିବି ଏବଂ ମୁଁ ହଜୁରଙ୍କ ଦୃଷ୍ଟିରେ ନିଶ୍ଚୟ ଆସିବି। ସୌଭାଗ୍ୟବଶତଃ ମୁଁ ଯଦି ଶ୍ରୀହଜୁରଙ୍କ ମନଲାଖି କାର୍ଯ୍ୟ କରିବାରେ ସଫଳତା ଅର୍ଜନ କରେ, ତାହାହେଲେ ହଜୁରଙ୍କ ବାହୁଛାୟାତଳେ ନିଜକୁ ନିରାପଦ ମନେକରିବାକୁ ସକ୍ଷମ ହୋଇପାରିବି। କିନ୍ତୁ ବର୍ତ୍ତମାନ ମୁଁ ମୋ ନିଜକୁ ବିକ୍ରୟ କଲା ଭଳି ହେବ।''

କାର୍ଡିନାଲ୍ କହିଲେ, ''ଏହା ଅର୍ଥ ତୁମେ ମୋ ଅଧୀନରେ ଚାକିରି କରିବାକୁ ମନାକରୁଛ'' —ତାଙ୍କ ସ୍ୱରରୁ ବିରକ୍ତିଭାବ ପ୍ରକାଶ ପାଉଥିଲା;

କିନ୍ତୁ ମନେହେଉଥିଲା, ଦାର୍‌ତାୟାଁର ରାଜାନୁରକ୍ତି ସେ ଯେପରି ହୃଦୟଙ୍ଗମ କରିପାରିଥିଲେ। ସେ ପୁଣି କହିଲେ, "ତୁମେ ମୁକ୍ତ ରହ, ତୁମର ବନ୍ଧୁମାନେ ମୁକ୍ତ ରହନ୍ତୁ, ଆଉ ତୁମର ଶତ୍ରୁମାନେ ମଧ୍ୟ।"

"ହଜୁର –"

କାର୍ଡିନାଲ୍ ପୁଣି କହିଲେ, "ମୁଁ ତୁମକୁ ଗୋଟିଏ ଛୋଟିଆ ଉପଦେଶ ଦେଉଛି– ତୁମେ ନିଜର ଯତ୍ନ ନିଅ। ଏହି ମୁହୂର୍ତ୍ତରୁ ମୋର ଅଭୟ ତୁମ ଉପରୁ ପ୍ରତ୍ୟାହାର କଲି; ତୁମ ଜୀବନର ଆଉ ବିନ୍ଦୁଏ ମାତ୍ର ନିରାପତ୍ତା ନାହିଁ।"

ଦାର୍‌ତାୟାଁ ଠିଆହେଲା ଓ ବିନୀତ ପ୍ରଣତି ନିବେଦନ କଲା – "ହଜୁର, ମୁଁ ଆପଣଙ୍କ କଥା କୃତଜ୍ଞତା ସହ ସାରା ଜୀବନ ମନରେ ରଖିବି।" କାର୍ଡିନାଲ୍ ଚିନ୍ତାକରି ପୁଣି କହିଲେ, "ଆଚ୍ଛା, ଦାର୍‌ତାୟାଁ ! ଆମେ ଦେଖିବା ଦେଖିବା; ମୁଁ ତୁମ ଉପରେ ଦୃଷ୍ଟି ଦେବି। ତୁମେ ଯୁଦ୍ଧରୁ ଫେରିଆସିବା ପରେ ତୁମ କଥା ବୁଝିବା।" –ଏହି କଥା ଭିତରେ ଯେଉଁ ଭୟଙ୍କର ବିପଦର ସମ୍ଭାବନା ରହିଲା, ତାହା ହୃଦୟଙ୍ଗମ କରି ଦାର୍‌ତାୟାଁ କହିଲା, "ହଜୁର, ମୁଁ–" କାର୍ଡିନାଲ୍ ତାକୁ ଆଉ କହିବାକୁ ନ ଦେଇ ପୁଣି କହିଲେ, "ଯୁବକ, ଭବିଷ୍ୟତରେ ଯଦି ତୁମକୁ ଏହି ପ୍ରସ୍ତାବ ଆଉ ଥରେ ଦେବାର ସୁଯୋଗ ପାଇବି, ତେବେ ନିଶ୍ଚୟ ଦେବି। ସେତିକି ବିଷୟ ମୁଁ ପ୍ରତିଜ୍ଞା କରୁଛି। ତୁମର ଭବିଷ୍ୟତ ତୁମ ନିଜ ହାତରେ।"

ଦାର୍‌ତାୟାଁ ଆଉ କିଛି କହିବାପୂର୍ବରୁ କାର୍ଡିନାଲ୍ ସେଠାରୁ ଚାଲିଯିବାକୁ ହାତ ହଲାଇ ତାକୁ ନିର୍ଦ୍ଦେଶ ଦେଲେ। ସେ କଣ କରିବ ମୁହୂର୍ତ୍ତକ ପାଇଁ ଭାବିପାରିଲା ନାହିଁ। ସେ ବିନୀତ ପ୍ରଣତି ନିବେଦନ କରି ଲାଇବ୍ରେରୀ କକ୍ଷ ଛାଡ଼ିଲା।

ଦାର୍‌ତାୟାଁ ପ୍ରଧାନ ଫାଟକ ନିକଟକୁ ଫେରିଆସି ଆଥସ୍ ଓ ତାଙ୍କର ବନ୍ଧୁ ଚାରିଜଣଙ୍କୁ ଦେଖିଲା। ସେମାନେ ସେତେବେଳକୁ ଅସହିଷ୍ଣୁ ହୋଇଉଠିଥିଲେ। ପ୍ଲାଞ୍ଚେଟ୍ ଯଥାଶୀଘ୍ର ଅନ୍ୟାନ୍ୟ ଫାଟକ ପାଖକୁ ଦୌଡ଼ିଯାଇ ସେଠାରେ ଥିବା ମସ୍‌କେଟିଅର୍‌ମାନଙ୍କୁ ଦାର୍‌ତାୟାଁ ଫେରିଆସିବା ବିଷୟ ଜଣାଇଦେଲା।

ଦାର୍‌ତାୟାଁ ମଧ୍ୟ ପ୍ଲାଞ୍ଚେଟ୍‌କୁ ଏମ୍. ଡି. ଟ୍ରିଭିଲ୍‌ଙ୍କ ପାଖକୁ ପଠାଇଦେଲା ସେ ଫେରିଆସିଥିବା ବିଷୟ ଜଣାଇଦେବାକୁ। ତା'ପରେ ମସ୍‌କେଟିଅର୍ ବନ୍ଧୁଗଣଙ୍କୁ ସେମାନଙ୍କର ସାହାଯ୍ୟ ପାଇଁ ଧନ୍ୟବାଦ ଜଣାଇ ଚାରିବନ୍ଧୁ

ନୀରବରେ ଫାର୍‌କୋନ୍ ହୋଟେଲ୍‌କୁ ଚାଲିଲେ। ସେଠାରେ ଗୋଟିଏ ନିରୋଳା କୋଠରିରେ ବସି ଖାଉ ଖାଉ ଦାର୍‌ତାୟାଁ କାର୍ଡିନାଲ୍‌ଙ୍କ ସହ ତାର ଯାହା ଯାହା କଥାବାର୍ତ୍ତା ହୋଇଥିଲା, ସେ ସବୁର ଟିକିନିଖି ବିବରଣୀ ପ୍ରଦାନ କଲା।

ଆରାମିସ୍ ବିନା ଦ୍ୱିଧାରେ କହିଲେ, ‘‘ତୁମେ ଏପରି ପ୍ରତ୍ୟାଖ୍ୟାନ କରିବାଦ୍ୱାରା ଠିକ୍ କାର୍ଯ୍ୟ କରିଛ।’’ ପୋର୍ଥସ୍ କହିଲେ, ‘‘ମୋର ମଧ ସେହି ମତ।’’ ଆଥସ୍ କିଛି ସମୟ ନୀରବରେ ଚିନ୍ତାକରି ଅତି ଶାନ୍ତଭାବରେ କହିଲେ, ‘‘ତୁମର ଯାହା କରିବାର କଥା, ତାହାହିଁ କରିଛ। ଏସବୁ ସତ୍ତ୍ୱେ ମୋର ମନେହୁଏ, ଏପରି କରିବାଦ୍ୱାରା ତୁମେ ଭୁଲ କରିଛ।’’

□ □ □

### ସ୍କୁଲ ଛାତ୍ରଛାତ୍ରୀଙ୍କର ଅତି ପ୍ରିୟ ବହି

## ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

ବିଶ୍ୱବିଖ୍ୟାତ ଲେଖକମାନଙ୍କ ବହିର ଓଡ଼ିଆ ସାରାନୁବାଦ ସୁଲଭ ମୂଲ୍ୟରେ ସଂଗ୍ରହ କରି ପିଲାମାନଙ୍କୁ ପଢ଼ିବାକୁ ଦେଇ ସେମାନଙ୍କ ପଠନ ପ୍ରବୃତ୍ତି ବୃଦ୍ଧି କରନ୍ତୁ।

ଚାର୍ଲସ୍ ଡିକେନ୍ସ୍
ଆଲେକଜାଣ୍ଡର ଡୁମାଁ
ୱାଲଟର୍ ସ୍କଟ୍
ଭିକ୍ଟର ହ୍ୟୁଗୋ
ଏଚ୍. ରାଇଡ଼ର୍ ହାଗାର୍ଡ
ଲର୍ଡ ଲିଟନ୍
ମାର୍କ ଟୋୟେନ୍
ଚାରଲୋଟ୍ ବ୍ରଣ୍ଟେ
ଜୁଲ ଭାର୍ଣ୍ଣ
ଜୋନାଥନ୍ ସ୍ୱିଫଟ
ଆନ୍ଥୋନି ହୋପ୍
ଆର୍. ଏଲ୍. ଷ୍ଟିଭେନ୍‌ସନ୍
ୱାଂସିଟନ୍ ଇରଭିଙ୍ଗ
ଆର୍. ଏମ୍. ବାଲାଣ୍ଟାଇନ
ଏଚ୍. ଜି ୱେଲସ୍
ଅଲିଭର୍ ଗୋଲଡ୍‌ସ୍ମିଥ
ଉଇଲିୟମ୍ ଥାକେରି
ଆର୍. ସବାଟିନି
ସର୍‌ଭେଣ୍ଟିସ
ଜେନ୍ ଅଷ୍ଟିନ୍
ଯୋଶେଫ୍ କୋନାର୍ଡ
ଆର୍ଥର୍ କୋନାନ୍‌ଡୟଲ
ଉଇଲକି କୋଲିନ୍ସ
ଜି. ଏ. ହେଣ୍ଟି

ଥୋମାସ୍ ହାର୍ଡି
ଡାନିଏଲ୍ ଡିଫୋ
ବ୍ଲାକ୍‌ମୋର୍
ଜର୍ଜ ଇଲିଅଟ
ସେକ୍‌ସପିଅର
ଲିଓ ଟଲଷ୍ଟୟ
ଚେକଭ୍
ହୋମର୍
ଗର୍କି
ମୋପାସାଁ
ଗ୍ରୀମସ୍
ଆଣ୍ଡରସନ
ବଙ୍କିମଚନ୍ଦ୍ର
ଶରତ୍‌ଚନ୍ଦ୍ର
କାଳିଦାସ
ଶୁଦ୍ରକ
ପ୍ରେମଚାନ୍ଦ
ଫକୀରମୋହନ
ଜାତକ କାହାଣୀ
ମହାଭାରତ କାହାଣୀ
ରାମାୟଣ କାହାଣୀ
କଥାସରିତସାଗର
ହିତୋପଦେଶ କାହାଣୀ
ପଞ୍ଚତନ୍ତ୍ର କାହାଣୀ

ପ୍ରକାଶକ : **ଗ୍ରନ୍ଥମନ୍ଦିର**, ବିନୋଦବିହାରୀ, କଟକ-୨